# ଜୀବନୀ-ବର୍ତ୍ତିକା

ଅଧ୍ୟାପକ ଶ୍ରୀଧର ଦାସ
ଏମ. ଏ., ଡି. ଲିଟ୍.

# ଜୀବନୀ-ବର୍ତ୍ତିକା

## ପ୍ରଥମ ଭାଗ

ଯୁଗ୍ମ ଲେଖକ—

ଅଧ୍ୟାପକ **ଶ୍ରୀଧର ଦାସ**, ଏମ୍. ଏ. ଡ଼ି. ଇଡ଼୍.
ଅଧ୍ୟାପକ **ପଠାଣି ପଟ୍ଟନାୟକ**, ଏମ୍. ଏ.

ପ୍ରଥମ ସଂସ୍କରଣ

୧୯୭୧

—ପ୍ରକାଶକ—

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

**ଗ୍ରନ୍ଥମନ୍ଦିର**

କଟକ-୨ ; ବ୍ରହ୍ମପୁର

ମୂଲ୍ୟ ଏକଟଙ୍କା

# ସୂଚୀ



———

# ରୁଷିଆର ଋଷି ଟଲଷ୍ଟୟ୍

ସାଧାରଣତଃ ଆମ୍ଭେମାନେ ଦେଖିବାକୁ ପାଉଁ ଯେ ଅନେକ ବଡ଼ ଲୋକ ଦରିଦ୍ର ପରିବାରରେ ଜନ୍ମ ହୋଇ ମଧ୍ୟ ନାନା ଦୁଃଖ କଷ୍ଟ ମଧ୍ୟରେ ଉଚ୍ଚ ଆସନକୁ ଉଠିଥାନ୍ତି । ଧନୀ ଓ ସମ୍ଭ୍ରାନ୍ତ ପରିବାରରେ ଜନ୍ମି ଆପଣାର ସୁଖରେ ଜଳାଞ୍ଜଳି ଦେଇଥିବା ଲୋକଙ୍କର ଉଦାହରଣ କମ୍ ଦେଖି-ବାକୁ ମିଳେ । ଆମ ଭାରତରେ ବୁଦ୍ଧଦେବ ରାଜ ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ଜନ-ସାଧାରଣଙ୍କୁ ସୁଖଶାନ୍ତିର ପଥ ଦେଖାଇବା ପାଇଁ ଜୀବନରେ ଦୁଃଖ ଦାରି-ଦ୍ର୍ୟକୁ ବରଣକରି ନେଇ ଥିଲେ । ବୁଦ୍ଧଦେବ ପ୍ରାପ୍ତ ଅଦ୍ୱୈତଜ୍ଞାନ ବର୍ଷ ତଳେ ଭାରତରେ ଆବିର୍ଭୂତ ହୋଇଥିଲେ ।



[ ଟଲଷ୍ଟୟ୍ ]

କିନ୍ତୁ ଏଠାରେ ଯେଉଁ ମହାପୁରୁଷଙ୍କ କଥା କୁହାଯାଉଅଛି, ସେ ରୁଷିଆରେ ଗତ ଶତାବ୍ଦୀରେ ଜନ୍ମ ହୋଇଥିଲେ । ଏହାଙ୍କର ନାମ ଲିଓ ଟଲଷ୍ଟୟ୍ ।

ମଧ୍ୟ ରୁଷିଆର ୟ୍ୟାସ୍ନାୟା ପଲିଆନା ନାମକ ଏକ କ୍ଷୁଦ୍ର ଗ୍ରାମରେ ୧୮୨୮ ମସିହାର ଅଗଷ୍ଟ ମାସ ୨୮ ତାରିଖରେ ଟଲଷ୍ଟୟଙ୍କର ଜନ୍ମ । ତାଙ୍କର ପିତା ଜଣେ ଧନୀ ଜମିଦାର ଥିଲେ । ଶହ ଶହ ପ୍ରଜା ତାଙ୍କର ଜମି ଚାଷକରି ଚଳୁଥିଲେ । ଅଭାବ କଅଣ ତାଙ୍କୁ ଜଣା ନ ଥିଲା । ପିତା ମାତା ଶିଶୁ ଟଲଷ୍ଟୟଙ୍କୁ ଅତି ଆଦରରେ ଲାଳନପାଳନ କରୁଥିଲେ ; କିନ୍ତୁ ପିତାମାତାଙ୍କର ଆଦର ଯତ୍ନ ତାଙ୍କ ଭାଗ୍ୟରେ ବେଶୀ ଦିନ ଘଟି ନ ଥିଲା । ତାଙ୍କୁ ନଅବର୍ଷ ହେବା ପୂର୍ବରୁ ସେ ପିତା ଓ ମାତା ଉଭୟଙ୍କୁ ହରାଇଥିଲେ । ତାଙ୍କର ଟଟିଆନା ବୋଲି ଜଣେ ମାଉସୀ ଥିଲେ । ସେ ଟଲଷ୍ଟୟଙ୍କୁ ନିଜର ପୁଅ ପରି ପାଳିବାକୁ ଲାଗିଲେ ।

ଟଲଷ୍ଟୟ ଦେଖିବାକୁ ସୁନ୍ଦର ନ ଥିଲେ । ତେଣୁ ସେ ଅନ୍ୟାନ୍ୟ ପିଲାମାନଙ୍କ ସଙ୍ଗେ ବେଶୀ ମିଳାମିଶା କରୁ ନ ଥିଲେ । ବରଂ ଅନେକ ସମୟରେ ଘରୁ ପଳାଇ ଯାଇ ବଣ ବଗିଚାରେ ଏକାକୀ ସମୟ କଟାଉଥିଲେ । ସେ କେତେଗୁଡ଼ିଏ ଜୀବଜନ୍ତୁ ପାଳିଥିଲେ ଓ ସେମାନଙ୍କୁ ଆଦର କରୁଥିଲେ । ତାଙ୍କର ହୃଦୟ ଅତି କୋମଳ ଥିଲା । ଏହି ଜୀବଜନ୍ତୁଙ୍କ ଭିତରୁ କାହାରି କିଛି କଷ୍ଟ ହେଲେ ବା କାହାଠାରେ କିଛି ଆଘାତ ଲାଗିଲେ ସେ ଦୁଃଖରେ କାନ୍ଦି ପକାଉଥିଲେ ।

ପନ୍ଦର ବର୍ଷ ବୟସରେ ସେ କାଜାନ ବିଶ୍ୱବିଦ୍ୟାଳୟକୁ ପଢ଼ିବାକୁ ଗଲେ ; ମାତ୍ର ପାଠପଢ଼ା ପ୍ରତି ତାଙ୍କର ବିଶେଷ ମନୋ-ଯୋଗ ନ ଥିଲା । କେବଳ ସେ ବୁଦ୍ଧିମାନ୍ ଛାତ୍ର ହୋଇଥିବାରୁ କୌଣସିମତେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ । କାଜାନରେ ଥିବା ସମୟରେ ସେ ଜୁଆ ଖେଳରେ ମାତୁଥିଲେ ; ଅନେକ ସମୟରେ

ଅନ୍ୟ ଧନୀ ପିଲାଙ୍କ ସଙ୍ଗରେ ମିଶି ମଦ ପିଉଥିଲେ । ମାତ୍ର କିଛିକାଳ ପରେ ଏପରି କାର୍ଯ୍ୟ ପ୍ରତି ତାଙ୍କର ଘୃଣା ଆସିଥିଲା ଓ ସେ ଏସବୁ ଦୁରଭ୍ୟାସ ଛାଡ଼ି ଦେଇଥିଲେ । କାଜାନରେ ପାଞ୍ଚ ବର୍ଷ କଟାଇ ସେ ନିଜ ଜନ୍ମସ୍ଥାନ ୟାସ୍ନାୟା ପଲିଆନାକୁ ଫେରି ଆସିଲେ ।

ତାଙ୍କର ଜଣେ ଦାଦା ଥିଲେ । ସେ ଟଲଷ୍ଟୟଙ୍କୁ ଯୁଦ୍ଧ ବିଭାଗରେ ପ୍ରବେଶ କରିବାକୁ ପ୍ରବର୍ତ୍ତାଇଲେ । ଯୁଦ୍ଧ ବିଭାଗରେ ଯୋଗଦେବା ପରେ ତାଙ୍କ ଜୀବନରେ ଗୋଟିଏ ନୂତନ ଅଧ୍ୟାୟ ଫିଟିଲା । କ୍ରିମିୟା ଯୁଦ୍ଧ ଏହି ସମୟରେ ଘଟିବାରୁ ସେ ସେଥିରେ ଯୋଗ ଦେଲେ । ଯୁଦ୍ଧଭୂମିରେ ସେ ଅସାଧାରଣ ସାହସ ପ୍ରଦର୍ଶନ କରିଥିଲେ ସତ୍ୟ ; କିନ୍ତୁ ଏହି ଯୁଦ୍ଧଭୂମିରୁ ସେ ଯୁଦ୍ଧକୁ ଘୃଣା କରିବାକୁ ଶିକ୍ଷା କଲେ । ତାଙ୍କର ଏହି ଘୃଣା ଜୀବନବ୍ୟାପି ରହିଥିଲା । ଯୁଦ୍ଧରେ ଲିପ୍ତ ହେବା ଯେ କିପରି କ୍ଷତିକାରକ ଓ ଅନାବଶ୍ୟକ ତାହା ସେ ଏହି ସମୟରେ ବିଶେଷଭାବରେ ବୁଝି ପାରିଥିଲେ । ଯୁଦ୍ଧଭୂମିରେ ଆତ୍ମୀୟମାନଙ୍କର ମୃତଦେହ ଦେଖି ସେ ଦୁଃଖରେ ଅଭିଭୂତ ହୋଇ ଯାଉଥିଲେ ।

ଯୁଦ୍ଧବିଭାଗ ତ୍ୟାଗ କରି ଟଲଷ୍ଟୟ ସେଣ୍ଟ୍ ପିଟର୍ସବର୍ଗରେ ବାସ କରିବାକୁ ଲାଗିଲେ । ଏହି ସେଣ୍ଟ୍ ପିଟର୍ସବର୍ଗ ଏବେ ଲେନିନ୍‌ଗ୍ରାଡ୍ ନାମରେ ପ୍ରସିଦ୍ଧ । ଏଠାରେ ରହିବା ପରେ ଚାରିପାଞ୍ଚବର୍ଷ ମଧ୍ୟରେ ସେ ପତ୍ରପତ୍ରିକାମାନଙ୍କରେ କେତେଗୁଡ଼ିଏ ପ୍ରବନ୍ଧ ଲେଖିଥିଲେ ଏବଂ ନିଜର ବାଲ୍ୟଜୀବନ ବିଷୟରେ ଖଣ୍ଡିଏ ବହି ଲେଖିଥିଲେ । ଏହି ବହିଖଣ୍ଡିକ ଦ୍ୱାରା ସେ ଜଣେ ଉଚ୍ଚଦରର ଲେଖକରୂପେ ଖ୍ୟାତି ଲାଭ କରିପାରିଥିଲେ । ସେଣ୍ଟପିଟର୍ସବର୍ଗରେ ସେ ପ୍ରାୟ ଦୁଇବର୍ଷ

ଧନୀ ଓ ଖ୍ୟାତନାମା ଲୋକମାନଙ୍କ ମଧ୍ୟରେ କଟାଇ ଥିଲେ । କିନ୍ତୁ ଏଥିରେ ତାଙ୍କ ମନରେ ଶାନ୍ତି ଆସି ନ ଥିଲା । ସେମାନେ ବଡ଼ ସ୍ୱାର୍ଥପର ଥିଲେ ଏବଂ କୌଣସି ଉଚ୍ଚ ଲକ୍ଷ୍ୟ ନ ରଖି ଆମୋଦ ପ୍ରମୋଦରେ ଜୀବନ କଟାଉଥିଲେ । ଟଲଷ୍ଟୟ ଏ ସବୁ ଦେଖି ବିରକ୍ତିରେ ନିଜ ଜନ୍ମସ୍ଥାନକୁ ଚାଲି ଆସିଥିଲେ ।

ସେ କାଳରେ ରୁଷିଆର କୃଷକମାନେ ନିତାନ୍ତ ମୂର୍ଖ ଥିଲେ । ସେମାନଙ୍କ ଜୀବନ ଦାସ ଜୀବନଠାରୁ ମଧ୍ୟ ହୀନ ଥିଲା । କିପରି ଏହି ଦରିଦ୍ର କୃଷକମାନଙ୍କର ଅବସ୍ଥାର ଉନ୍ନତି ହୋଇପାରିବ ତାହା ତାଙ୍କର ପ୍ରଧାନ ଚିନ୍ତା ହେଲା । ଅନ୍ୟାନ୍ୟ ଦେଶରେ କୃଷକମାନଙ୍କର ଅବସ୍ଥା ଲକ୍ଷ୍ୟ କରିବା ଉଦ୍ଦେଶ୍ୟରେ ସେ ଜର୍ମାନୀ, ଫ୍ରାନ୍ସ, ଇଂଲଣ୍ଡ ପ୍ରଭୃତି ଦେଶ ବୁଲି ସେ ଦେଶମାନଙ୍କର ଶିକ୍ଷାପ୍ରଣାଳୀ ବିଷୟରେ ଜ୍ଞାନ ଅର୍ଜନ କଲେ । ଏହା ଫଳରେ ସେ ନିଜ ଦେଶରେ ଶିକ୍ଷାର ପ୍ରସାର ପାଇଁ କେତେକ ପନ୍ଥା ସ୍ଥିର କଲେ । କୃଷକମାନଙ୍କ ଉନ୍ନତି ନିମନ୍ତେ ସେ ଦିନକୁ ଦିନ ନୂଆ ନୂଆ ଉପାୟ ବାହାର କରିବାରୁ ସେହି କୃଷକମାନେ ମଧ୍ୟ ବିସ୍ମୟ ପ୍ରକାଶ କଲେ । ଟଲଷ୍ଟୟ ଜଣେ ଜମିଦାର । ଘରେ ନିଶ୍ଚିନ୍ତରେ ବସି ମଉଜ-ମଜଲିସରେ ଦିନ ନ କଟାଇ କୃଷକମାନଙ୍କ ଶିକ୍ଷା କଥା ଭାବିବା ତାଙ୍କର କି ଦରକାର ? ଶିକ୍ଷାରେ ବା ସେମାନଙ୍କର ପ୍ରୟୋଜନ କଅଣ ? ପାଠ ନ ପଢ଼ି କଅଣ ସେମାନେ ଚାଷ କରିପାରିବେ ନାହିଁ । ସେମାନଙ୍କ ବାପ ଅଜା ପାଠ ନ ପଢ଼ି ପୁଣି ଚଳୁଥିଲେ ତ ।

ପାଠପଢ଼ା ପ୍ରତି କୃଷକମାନେ ଆକୃଷ୍ଟ ହେଉ ନ ଥିଲେ । କିନ୍ତୁ ଟଲଷ୍ଟୟ ନିଜ ଚେଷ୍ଟାରୁ ବିରତ ହେଲେ ନାହିଁ । ଅନ୍ୟାନ୍ୟ ଦେଶରେ ସେ ଦେଖିଥିଲେ ଯେ କୃଷକମାନେ ଶିକ୍ଷା ପାଇ ଉନ୍ନତ

ଧିରଣରେ ଚାଷ କରୁଅଛନ୍ତି । ସେ ସେହିପ୍ରକାର ଉନ୍ନତି କରିବାପାଇଁ ନୂଆ ନୂଆ ପରୀକ୍ଷା ଚଳାଇଲେ । କ୍ରମେ କୃଷକମାନଙ୍କ ମନରୁ ସନ୍ଦେହ ତୁଟିଗଲା ଏବଂ ସେମାନେ ବିଶ୍ୱାସ କଲେ ଯେ ଟଲଷ୍ଟଏ ଯାହା କରୁଛନ୍ତି, ତାହା ସେମାନଙ୍କ ଉପକାର ପାଇଁ । କୃଷକ-ମାନଙ୍କ ମନରେ ପରିବର୍ତ୍ତନ ଆସିବାରୁ ସେମାନେ ତାଙ୍କୁ ନିଜର ନେତା ବୋଲି ମାନିଲେ ।

ଏସବୁ କାର୍ଯ୍ୟ ମଧ୍ୟରେ ଟଲଷ୍ଟଏ ବହି ଲେଖିବାରେ ମଧ୍ୟ ଲାଗିଥାନ୍ତି । ଲୋକମାନଙ୍କ ମନରେ ଆନନ୍ଦ ଦେବା ବା ଟଙ୍କା ଅର୍ଜିବା ଲାଗି ସେ ଲେଖୁ ନ ଥିଲେ । କୃଷକମାନଙ୍କର ଦୁରବସ୍ଥା, ଜମିଦାର ରୟତ ମଧ୍ୟରେ ସମ୍ବନ୍ଧ, ଯୁଦ୍ଧର ଅନାବଶ୍ୟକତା—ଏହିପରି ବିଷୟରେ ସେ ଲେଖୁଥିଲେ । ସେ 'ଯୁଦ୍ଧ ଓ ଶାନ୍ତି' ବୋଲି ଗୋଟିଏ ବଡ଼ ଉପନ୍ୟାସ ଲେଖିଥିଲେ । ଏହି ପୁସ୍ତକଟି କେବଳ ରୁଷିଆରେ ନୁହେଁ, ସମଗ୍ର ପୃଥିବୀରେ ଖ୍ୟାତି ଲାଭ କରିଥିଲା । ପୃଥିବୀର ନାନା-ଭାଷାରେ ଏହାର ଅନୁବାଦ ବାହାରିଲା । ଏହି ଉପନ୍ୟାସଟି ପରେ ସେ ଆହୁରି ଅନେକଗୁଡ଼ିଏ ବହି ମଧ୍ୟ ଲେଖିଥିଲେ ।

ଟଲଷ୍ଟଏ ଦରିଦ୍ର କୃଷକମାନଙ୍କ ସାଥିରେ ସେମାନଙ୍କ ପରି ବାସ କରିବାକୁ ଲାଗିଲେ । ସେମାନଙ୍କ ସୁଖଦୁଃଖରେ ସେ ନିଜକୁ ସଂପୂର୍ଣ୍ଣରୂପେ ମିଶାଇ ଦେଲେ । ଥରେ ସେ କେତେକ ଲୋକଙ୍କ ସଙ୍ଗରେ ଶିକାର କରି ଯାଇଥିଲେ । ହଠାତ୍ ଗୋଟିଏ ଭାଲୁ ବଣରୁ ବାହାରି ପଡ଼ି ତାଙ୍କୁ ଆକ୍ରମଣ କଲା । ସେ ଭାଲୁଟିକୁ ଗୁଳି କଲେ ; ମାତ୍ର ସେ ଆଘାତ ପାଇ ଆହୁରି ଭୀଷଣ ଭାବରେ ତାଙ୍କୁ ଆକ୍ରମଣ କରି କ୍ଷତବିକ୍ଷତ କରି ପକାଇଲା । ଠିକ୍ ସମୟରେ କେତେ ଜଣ ସଙ୍ଗୀ ଆସି ତାଙ୍କୁ ଉଦ୍ଧାର କରିପାରିଥିଲେ ।

ସେତେବେଳକୁ ଟଲଷ୍ଟୟଙ୍କ ବୟସ ସତୁରି ବର୍ଷରୁ ବେଶୀ । ତାଙ୍କର ଜମିଦାରୀଟି ଖୁବ ବଡ଼ ଓ ଲାଭଜନକ ଥିଲା । ଘରେ ସ୍ତ୍ରୀ ଓ ପିଲାମାନେ ସୁଖରେ ଥିଲେ । ତାଙ୍କର ସ୍ୱାସ୍ଥ୍ୟ ଉତ୍ତମ ଥିଲା । ଜଣେ ଉତ୍କୃଷ୍ଟ ଲେଖକ ଭାବରେ ସମଗ୍ର ପୃଥିବୀରେ ତାଙ୍କର ଖ୍ୟାତି ହୋଇଥିଲା । ମନୁଷ୍ୟ ସୁଖ ଭୋଗିବାପାଇଁ ଯାହା ସବୁ ଦରକାର କରେ ସେ ସବୁ ଟଲଷ୍ଟୟଙ୍କର ଅଭାବ ନ ଥିଲା । ମାତ୍ର ଟଲଷ୍ଟୟଙ୍କ ଜୀବନ ଅନ୍ୟ ଉପାଦାନରେ ଗଢ଼ା ହୋଇଥିଲା ।

ଜମିଦାରୀ, ପୁଅ ଝିଅ, ସ୍ତ୍ରୀ ଏ ସବୁ ତାଙ୍କୁ ଭଲ ଲାଗିଲା ନାହିଁ । ସେ ମନେକଲେ ଯେ ତାଙ୍କର ଜୀବନ ବୃଥା କଟିଗଲା ; ସେ କିଛି କରିପାରିଲେ ନାହିଁ । ଏହି ଚିନ୍ତା ତାଙ୍କୁ ଏପରି ଗ୍ରାସ କଲା ଯେ ସେ ଆତ୍ମହତ୍ୟା କରିବାକୁ ମନ କଲେ । ସ୍ତ୍ରୀ ଓ ବନ୍ଧୁମାନେ ତାଙ୍କର ମନୋଭାବ ଜାଣିପାରି ତାଙ୍କୁ ଜଗି ରହିଲେ ; ତାଙ୍କ ପାଖରେ ଯେପରି କୌଣସି ବନ୍ଧୁକ ବା ଅନ୍ୟ ଆତ୍ମହତ୍ୟାର ଉପକରଣ ନ ରହେ ସେଥିପାଇଁ ସାବଧାନ ହେଲେ ।

ପ୍ରଥମେ ସେ ପ୍ରଚଳିତ ଧର୍ମ-ଅନୁଷ୍ଠାନରେ ଯୋଗ ଦେବାକୁ ବସିଥିଲେ ; ମାତ୍ର ସେ ଦେଖିଲେ ଯେ ଏଥିରେ ନାନା କର୍ମକର୍ମାଣି ଓ ଅନ୍ଧବିଶ୍ୱାସ ଛଡ଼ା କିଛି ସାର ନାହିଁ । ଯୀଶୁ ଖ୍ରୀଷ୍ଟଙ୍କ ସରଳ ଜୀବନ ଓ ତାଙ୍କ ଉପଦେଶ ଜାଣିବା ପରେ ସେ ଧର୍ମ-ଅନୁଷ୍ଠାନଠାରୁ ନିଜକୁ ଦୂରରେ ରଖିଲେ ; କାରଣ ସେଥିରେ ଯୀଶୁଙ୍କ ଆଦର୍ଶ ଓ ଉପଦେଶ ପାଳିତ ହେଉ ନ ଥିଲା ।

ଏହିପରି ଅଶାନ୍ତିରେ ସେ ତିନିବର୍ଷ କଟାଇଲେ । ଦିନେ ସେ ବନମଧ୍ୟରେ ଏକାକୀ ଚିନ୍ତାକୁଳଭାବରେ ଭ୍ରମଣ କରୁଥିଲେ । ପକ୍ଷୀମାନେ ମଧୁର ସ୍ୱରରେ ଗାଉଥାନ୍ତି ; ଝରଣା କୁଳୁକୁଳୁ କରି

କରୁଥାଏ । ତାଙ୍କର ମନେହେଲା ସତେ ଯେପରି ସ୍ୱୟଂ ଭଗବାନ ତାଙ୍କୁ ସାନ୍ତ୍ୱନା ଦେଉ ଅଛନ୍ତି । 'ଈଶ୍ୱର ମଙ୍ଗଳ ମୟ' ଏହି ଧାରଣା ହୃଦୟକୁ ଅଧିକାର କଲା । ସେ ନୂତନ ଆଲୋକ ଲାଭ କରିଥିବାର ଅନୁଭବ କଲେ ।

ଏଥିରେ ସଂଶୟର କାରଣ ନାହିଁ । ଏହିପରି ଦିନେ ସିଦ୍ଧାର୍ଥ ବୋଧିଦ୍ରୁମମୂଳରେ ବୁଦ୍ଧତ୍ୱ ଲାଭକରିଥିଲେ ।

ସେ ବାଇବେଲ ପଢ଼ି ପଢ଼ି ଯୀଶୁଙ୍କର ଉପଦେଶକୁ ନୂତନ ଭାବରେ ବିଚାର କରିବାକୁ ଲାଗିଲେ । ତାଙ୍କର ଧାରଣା ହେଲା ଯେ ସାଧାରଣ ଲୋକ ତ ଦୂରର କଥା, ଯେଉଁମାନେ ସାଧୁ ଲୋକ ବୋଲି ପରିଚିତ ସେମାନେ ମଧ୍ୟ ଯୀଶୁଙ୍କର ଉପଦେଶଠାରୁ ବହୁ ଦୂରରେ । ଯୁଦ୍ଧ ପ୍ରତି ତାଙ୍କର ଘୃଣା ଦ୍ୱିଗୁଣିତ ହୋଇଗଲା । ଲୋଭ ଓ ସ୍ୱାର୍ଥପରତାକୁ ସେ ବିଷଦୃଷ୍ଟିରେ ଦେଖିବାକୁ ଲାଗିଲେ । ତାଙ୍କର ଏହି ଧାରଣାକୁ କେନ୍ଦ୍ର କରି ସେ ଅନେକଗୁଡ଼ିଏ ବହି ଲେଖିଲେ । ଏଗୁଡ଼ିକ ଦ୍ୱାରା କେତେକ ଲୋକଙ୍କର ମନରେ ନୂତନ ଭାବ ଜାତ ହେଲା । ଅନ୍ୟ କେତେକ ତାଙ୍କର ବିରୋଧୀ ହୋଇ ଉଠିଲେ । ତାଙ୍କର ଧର୍ମଗୋଷ୍ଠୀ ତାଙ୍କୁ ସମାଜଚ୍ୟୁତ କଲା । ନିର୍ଭୀକ-ଭାବରେ ନିଜର ସ୍ପଷ୍ଟ ମତ ପ୍ରକାଶ କରୁଥିବାରୁ କେହି କେହି ତାଙ୍କର ପ୍ରଶଂସା କଲେ ; କିନ୍ତୁ ଟଲଷ୍ଟୟ କାହାରି ନିନ୍ଦା ବା ପ୍ରଶଂସା ପ୍ରତି ମନ ଦେଉ ନ ଥିଲେ ।

ଟଲଷ୍ଟୟ ପରିବାର ସହିତ ମସ୍କୋନଗରକୁ ଗଲେ । ସେଠାରେ ସେ ଜନଗଣନା କାର୍ଯ୍ୟରେ ସାହାଯ୍ୟ କରିଥିଲେ । ଏହି କାର୍ଯ୍ୟର ପ୍ରଥମ ଦିନରେ ହିଁ ତାଙ୍କର ଧାରଣା ହେଲା ଯେ ଏପରି ଦୁଃଖ-ଦାରିଦ୍ର୍ୟ ମଧ୍ୟରେ ମନୁଷ୍ୟ ରହିବା ଅସମ୍ଭବ । ତାଙ୍କ ଆଖିରୁ ଲୁହର

ଧାର ବହିଗଲା । ନୈରାଶ୍ୟରେ କେତେକ ମାସ ପର୍ଯ୍ୟନ୍ତ ସେ କୌଣସି କାର୍ଯ୍ୟ କରିପାରିଲେ ନାହିଁ ।

ସେ ପୁଣି କୃଷକମାନଙ୍କ ନିକଟକୁ ଫେରିଆସି ଠିକ ସେହି-ମାନଙ୍କ ପରି ଜୀବନ କଟାଇବାକୁ ଲାଗିଲେ ; ଏପରିକି ସେ ଚାଷୀ-ମାନଙ୍କ ପରି ଛିଣ୍ଡା ମଇଳା ପୋଷାକ ମଧ୍ୟ ପିନ୍ଧିଲେ । ପ୍ରଥମ ଜୀବନରେ ସେ ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ବଢ଼ିଥିଲେ । ଏବେ ସେ ଦରିଦ୍ର ଜୀବନ ବରଣ କରିନେଲେ । ଚାକରମାନଙ୍କୁ ବିଦାୟ ଦେଇ ସେ ଅନ୍ୟ ଚାଷୀମାନଙ୍କ ପରି ସମସ୍ତ କାର୍ଯ୍ୟ ନିଜ ହାତରେ କଲେ ; ସେମାନଙ୍କ ପରି ମୋଟା ଖାଇ ମୋଟା ପିନ୍ଧି ଦିନ କଟାଇଲେ ; ପାଖରେ ଟଙ୍କା ପଇସା ରଖିଲେ ନାହିଁ । ତାଙ୍କର ଧାରଣା ହେଲା ଯେ ଜୀବନ ରକ୍ଷା ପାଇଁ ଯେତିକ ନିତାନ୍ତ ଦରକାର ତାଠାରୁ ବେଶୀ କିଛି ଭୋଗ କରିବା ମହାପାପ । ତାଙ୍କର ପରିବାର ଟଲଷ୍ଟୟଙ୍କର ଏପରି ଜୀବନ ଯାପନ ଦେଖି ଅସନ୍ତୁଷ୍ଟ ହେଲେ ; କିନ୍ତୁ ସେ ଭୋଗ ବିଳାସକୁ ଫେରିଯାଇ ନ ଥିଲେ ।

ଏଣେ ରୁଷିଆର ସରକାର ଟଲଷ୍ଟୟଙ୍କର ଏହି ସବୁ କାର୍ଯ୍ୟରେ ବିରକ୍ତ ହେଉଥିଲେ । ରାଜକର୍ମଚାରୀମାନଙ୍କ ସଙ୍ଗେ ଅନେକ ସମୟରେ ତାଙ୍କର ବିରୋଧ ଘଟୁଥିଲା । ତଥାପି ରୁଷିଆର ସମ୍ରାଟ ତାଙ୍କୁ କୌଣସି ଦଣ୍ଡ ଦେବାର ପକ୍ଷପାତୀ ନ ଥିଲେ । ଦିନେ ସେ ମସ୍କୋ ସହରରେ ବୁଲୁ ବୁଲୁ ଦେଖିଲେ ଯେ ଜଣେ କନେଷ୍ଟବଳ ଗୋଟିଏ ଭିଖାରୀକୁ ଗାଳି ଦେଉଅଛି । ସେ କନେଷ୍ଟବଳକୁ କହିଲେ, "ତୁମେ ପରା ଖ୍ରୀଷ୍ଟିଆନ ! ବାଇବେଲ ପଢ଼ିଥିବ ତ ! ସେଥିରେ ଯୀଶୁଖ୍ରୀଷ୍ଟ କହିଅଛନ୍ତି ଯେ 'କ୍ଷୁଧାର୍ତ୍ତକୁ ଖାଇବାକୁ ଦେବ' । ମାତ୍ର ତୁମେ କରୁଛ କଅଣ ?"

କନେଷ୍ଟବଲଟି କହିଲା, "ତୁମେ ବାଇବେଲ ସିନା ପଢ଼ିଛ; ସେଥିପାଇଁ ଏପରି କହୁଛ । କିନ୍ତୁ ତୁମେ ପୁଲିସ ଆଇନ ପଢ଼ିଛ କି ?"

ସେତେବେଳକୁ ଟଲଷ୍ଟୟଙ୍କର ବୟସ ୮୨ ବର୍ଷ ହୋଇଥିଲା । ଦିନେ ଶୀତକାଳର ସକାଳେ ନିଜର ବନ୍ଧୁବାନ୍ଧବ ସମସ୍ତଙ୍କୁ ଛାଡ଼ି ଜଣେ ଲୋକ ସହିତ ଘରୁ ବାହାରି ଗଲେ । ଏକେ ବୃଦ୍ଧବୟସ, ସେଥିରେ ପୁଣି ପ୍ରବଳ ଶୀତ । ଗୋଟିଏ ଛୋଟ ରେଳଷ୍ଟେସନ ପାଖରେ ସେ ବେମାର ହୋଇ ପଡ଼ିଲେ । ସେହିଠାରେ ୧୯୧୦ ମସିହା ନଭେମ୍ବର ମାସ ୨୦ ତାରିଖ ଦିନ ତାଙ୍କର ପ୍ରାଣବାୟୁ ବାହାରିଗଲା ।

ସେ ଯେ କେବଳ ରୁଷିଆର ଦରିଦ୍ର କୃଷକମାନଙ୍କ ନିମନ୍ତେ ନିଜର ଧନ ଓ ଜୀବନ ଦେଇଯାଇ ଅଛନ୍ତି ତାହା ନୁହେଁ ; ପୃଥିବୀର ଯାନ ସ୍ଥାନ ଅତ୍ୟାଚାରିତ ଜନସାଧାରଣଙ୍କ ପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲା । ପରାଧୀନ ଭାରତର ଦୁଃଖ ଦୁର୍ଦ୍ଦଶାରେ ସେ ବ୍ୟଥିତ ହେଉଥିଲେ । ମହାତ୍ମା ଗାନ୍ଧୀଙ୍କ ସହିତ ସେ ପତ୍ର ଦିଆନିଆ କରୁଥିଲେ ଟଲଷ୍ଟୟଙ୍କର ଜୀବନ ଓ ତାଙ୍କର ଲେଖା ଦ୍ୱାରା ମହାତ୍ମା ଗାନ୍ଧୀ ବିଶେଷ ପ୍ରଭାବିତ ହୋଇଥିଲେ ।

ରୁଷିଆରେ ଗତ ପଚାଶ ବର୍ଷ ମଧ୍ୟରେ ବିରାଟ ପରିବର୍ତ୍ତନ ଘଟିଯାଇଛି । ସମ୍ରାଟ୍ ବା ଜାରଙ୍କ ଶାସନ ଲୋପ ପାଇଛି । ଏବେ ସୁଦ୍ଧା ରୁଷିଆର ଲୋକେ ଟଲଷ୍ଟୟଙ୍କର ସ୍ମୃତି ଭୁଲିପାରି ନାହାନ୍ତି ।

---

# ସ୍ୱାଧୀନ ଇଟାଲୀର ଅଗ୍ରଦୂତ ଗାରିବଲ୍ଡି

ଗାରିବଲ୍ଡି ଇଟାଲିର ଗୋଟିଏ କେଉଟ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କର ବାପା ଓ ଜେଜେବାପା ମାଛମାରି କୁଟୁମ୍ବ ପୋଷୁଥିଲେ । ପିଲାଦିନେ ଗାରିବଲ୍ଡି ଅନ୍ୟ କେଉଟଙ୍କ ସାଙ୍ଗରେ ମାଛ ମାରିବାକୁ ଭଲ ପାଉଥିଲେ । ତାଙ୍କର ସ୍ୱରଟି ମଧୁର ଥିଲା । ସେ ଗୀତ ଗାଇଲେ ଲୋକେ ତାହା ଶୁଣି ଖୁସି ହୋଇ ଯାଉଥିଲେ । ସେ ମଧ୍ୟ ପହଁରି ପାରୁଥିଲେ । ଏହା ଦ୍ୱାରା ସେ ଅନ୍ୟମାନଙ୍କୁ ସାହାଯ୍ୟ କରିବାକୁ ସମର୍ଥ ହେଉଥିଲେ ।

ଥରେ ସେ ମର୍ସିଲେସ ବନ୍ଦରରେ ଗୋଟିଏ ଜାହାଜ ଉପରେ ଛିଡ଼ା ହୋଇଥିଲେ । ସେ ଦେଖିପାରିଲେ ଯେ ଜଣେ ଲୋକ ପାଣିରେ ପହଁରି ପହଁରି ଥକିଗଲାଣି; ଥରେ ବୁଡ଼ିଗଲେ ଥରେ ଉଠିଯାଉଛି ପୁଣି କିଛି ସମୟ ପରେ ବୁଡ଼ି ଯାଉଛି । ଗାରିବଲ୍ଡି ବୁଝିପାରିଲେ ଯେ ଲୋକଟି ଅଳ୍ପସମୟ ଭିତରେ ବୁଡ଼ି ମରିଯିବ । ସେ ହଠାତ୍ ଜାହାଜ ଉପରୁ ପାଣିକୁ ଡେଇଁପଡ଼ି ଲୋକଟିକୁ ଜାହାଜ ଉପରକୁ ଉଠାଇ ଦେଲେ । ଲୋକଟିର ଜୀବନ ରକ୍ଷା ହେଲା । ଗାରିବଲ୍ଡି ନିଜ ଜୀବନରେ ଏହିପରି ଷୋଳ ଜଣଙ୍କର ଜୀବନ ରକ୍ଷା କରିଥିଲେ ।



[ ଗାରିବଲ୍ଡି ]

୧୮୦୭ ମସିହା ଜୁଲାଇ ମାସ ୪ ତାରିଖ ଗାରିବାଲ୍‌ଡିଙ୍କର ଜନ୍ମ ଦିବସ । ସେତେବେଳକୁ ଇଟାଲି ଅଷ୍ଟ୍ରିଆ ରାଜ୍ୟର ଅଧୀନ ଥିଲା । ଅଷ୍ଟ୍ରିଆର ଲୋକେ ଇଟାଲିର ସବୁ ବଡ଼ ବଡ଼ ଚାକରିରେ ଥିଲେ । ସେମାନେ ବଡ଼ ଉଦ୍ଧତ ସ୍ୱଭାବର ଲୋକ ଥିଲେ ଏବଂ ଇଟାଲିର ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲେ । ଇଟାଲିର ଲୋକେ ସବୁ ଅପମାନ ସହିବାକୁ ବାଧ୍ୟ ହେଉଥିଲେ ।

ପିତା ଗାରିବାଲ୍‌ଡିଙ୍କୁ ବିଦ୍ୟାଳୟକୁ ପଠାଇଲେ । ମାତ୍ର ସେ ବେଶୀ ଦିନ ବିଦ୍ୟାଳୟରେ ରହିପାରିଲେ ନାହିଁ । ଜାହାଜରେ ପୃଥିବୀର ନାନା ଦେଶ ବୁଲିବାପାଇଁ ତାଙ୍କ ମନ ଉଚ୍ଛନ୍ନ ହେଉଥାଏ । ତାଙ୍କ ବାପା ଅନିଚ୍ଛାସତ୍ତ୍ୱେ ତାଙ୍କୁ ଜାହାଜରେ ଯିବାକୁ ଅନୁମତି ଦେଲେ । ଗାରିବାଲ୍‌ଡି ଗୋଟିଏ ଜାହାଜରେ ଛୋଟ ଚାକିରିଟିଏ ପାଇଲେ । ଦଶବର୍ଷ କାର୍ଯ୍ୟ କରିବା ପରେ ସେ ଗୋଟିଏ ବାଣିଜ୍ୟ ଜାହାଜର କପ୍ତାନ ପଦକୁ ଉଠିଲେ । ଏହି ଦଶବର୍ଷ ମଧ୍ୟରେ ସେ ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ । ତିନିଥର ଜଳଦସ୍ୟୁମାନେ ତାଙ୍କୁ ଧରି ନେଇଥିଲେ । ମାତ୍ର ପ୍ରତିଥର ସେ ସେମାନଙ୍କ ହସ୍ତରୁ ଉଦ୍ଧାର ପାଇଥିଲେ ।

ଅତି ପ୍ରାଚୀନ କାଳରେ ଇଟାଲିର ରୋମ ଗୋଟିଏ ବଡ଼ ଧନୀ ଓ କ୍ଷମତାଶାଳୀ ରାଜ୍ୟ ଥିଲା । ରୋମର ଅଧିବାସୀ ରୋମାନ୍‌ମାନେ ଏପରି ବୀର ଥିଲେ ଯେ ସେମାନେ ଅନେକ ଦେଶ ଜୟକରି ଗୋଟିଏ ସାମ୍ରାଜ୍ୟ ଗଢ଼ିଥିଲେ । ଗାରିବାଲ୍‌ଡି ଅନ୍ୟ ପିଲାମାନଙ୍କ ପରି ରୋମର ଗୌରବମୟ ଇତିହାସ ପଢ଼ିଥିଲେ । ଥରେ ସେ ବାପାଙ୍କ ସଙ୍ଗେ ରୋମ ଦେଖିବାକୁ ଯାଇଥିଲେ । ସେଠାରେ ପୂର୍ବକାଳର ଧ୍ୱଂସାବଶେଷ ଦେଖି ତାଙ୍କର ମନରେ ବଡ଼ ଦୁଃଖ ହୋଇଥିଲା ଓ

ସେ କାନ୍ଦ ପକାଇଥିଲେ । ସେ ମନେ ମନେ ପ୍ରତିଜ୍ଞା କଲେ—ଆଜ ଆମେ ଅଷ୍ଟ୍ରିଆ ଲୋକଙ୍କର କ୍ରୀତଦାସ ପରି ରହୁଛୁ । ପ୍ରାଣ ଯାଉ ପଛକେ ମୁଁ ଇଟାଲିର ପୂର୍ବ ଗୌରବ ଫେରାଇ ଆଣିବି ।

ଅଷ୍ଟ୍ରିଆ ଲୋକଙ୍କର ଅତ୍ୟାଚାରରେ ପୀଡ଼ିତ ହୋଇ ଇଟାଲିର କେତେକ ଯୁବକ ଗୋଟିଏ ସମିତି ଗଢ଼ିଥାଆନ୍ତି । ସେ ସମିତିର ନାମ 'ଯୁବକ ଇଟାଲି' । ଅଷ୍ଟ୍ରିଆଠାରୁ ଇଟାଲିକୁ ମୁକ୍ତ କରିବା ଏହି ସମିତିର ପ୍ରଧାନ ଲକ୍ଷ୍ୟ ଥାଏ । ସମିତିଟି ଗୋପନରେ କାର୍ଯ୍ୟ କରୁଥାଏ । ଗାରିବଲ୍ଡି ଏହି ସମିତିରେ ଯୋଗ ଦେଲେ ।

ଦିନେ 'ଯୁବକ ଇଟାଲି'ର ଗୋଟିଏ ସଭା ଗୋପନରେ ହେଉଥାଏ । ମାତ୍ର ପୋଲିସ କୌଣସିମତେ ଏ ସଭାର ସନ୍ଧାନ ପାଇ ହଠାତ୍ ଉପସ୍ଥିତ ହୋଇଗଲେ ଓ ସଭାର ସଭ୍ୟମାନଙ୍କୁ ବନ୍ଦୀ କଲେ । ମାତ୍ର ଗାରିବଲ୍ଡି ପୋଲିସର ଦୃଷ୍ଟିରୁ ଖସି ପଳାଇଲେ । ଏଗାର-ଦିନ ପର୍ଯ୍ୟନ୍ତ ଚାଲି ଚାଲି ସେ ନିଜ ଘରେ ପହଞ୍ଚିଲେ ।

ସେତେବେଳକୁ ତାଙ୍କ ଦେହରେ ଛିଣ୍ଡାଲୁଗା ଛଡ଼ା ଆଉ କିଛି ନ ଥାଏ । ବାଟରେ ଖାଇବା ପିଇବା ଅଭାବରୁ ତାଙ୍କର ହାଡ଼ ଗଣି ହୋଇ ଯାଉଥାଏ । ପ୍ରଥମେ ତାଙ୍କ ମାଆ ତାଙ୍କୁ ଚିହ୍ନିପାରି ନ ଥିଲେ । ଯାହା ହେଉ ଘରେ ସେ ଖାଇପିଇ ପୋଷାକ ବଦଳାଇଲେ. ମାତ୍ର ଘରେ ରହିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ଏଣେ ଇଟାଲିରେ ଥିବା ବିଦେଶୀ ସରକାର ଗାରିବଲ୍ଡିଙ୍କୁ ମୃତ୍ୟୁଦଣ୍ଡ ଆଦେଶ ଦେଇଥାନ୍ତି । ତେଣୁ ସେ ପ୍ରାଣରକ୍ଷା ପାଇଁ ଘର ଛାଡ଼ି ଚାଲିଗଲେ । ପୋଲିସକୁ ଲୁଚି ଲୁଚି ଯିବାକୁ ହେଉଥାଏ । ନଈ ପଡ଼ିଲେ ଘାଟରେ ପାରି ନ ହୋଇ ପହଁରି ଯିବାକୁ ପଡ଼ୁଥାଏ । ଏହିପରି ସେ ଶହେମାଇଲ ଅତିକ୍ରମ କରି ମର୍ସିଲେସରେ ପହଞ୍ଚିଲେ ।

ମର୍ସିଲେସରେ ମଧ୍ୟ ଗାରିବଲ୍‌ଡ଼ି ନିଜକୁ ନିରାପଦ ମନେ କରି ପାରିଲେ ନାହିଁ । ସେ ଜାଣିଥିଲେ ସେ ଅଷ୍ଟ୍ରିଆନ୍ ପୋଲିସ ହାତରେ ଧରାପଡ଼ିଲେ ତାଙ୍କର ମୃତ୍ୟୁ ନିଶ୍ଚିତ । ୧୮୩୭ ମସିହାରେ ସେ ଆମେରିକାକୁ ପଳାଇବା ସ୍ଥିର କଲେ । ସେତେବେଳକୁ ରିଓଗ୍ରାଣ୍ଡି ସାଧାରଣ ତନ୍ତ୍ର ରାଜ୍ୟର ଲୋକେ ବ୍ରାଜିଲର ସମ୍ରାଟଙ୍କଠାରୁ ନିଜକୁ ସ୍ୱାଧୀନ କରିବାପାଇଁ ଯୁଦ୍ଧ କରୁଥାନ୍ତି । ଗାରିବଲ୍‌ଡ଼ି ରିଓଗ୍ରାଣ୍ଡିର ସୈନ୍ୟବିଭାଗରେ ଯୋଗଦେଲେ ।

ଗାରିବଲ୍‌ଡ଼ି ଇଟାଲିଠାରୁ ସହସ୍ର ସହସ୍ର ମାଇଲ ଦୂରରେ ରହି ଗୋଟିଏ ଦେଶର ସ୍ୱାଧୀନତା ପାଇଁ ଯୁଦ୍ଧ କରିବାରେ ଲାଗି-ଥାନ୍ତି । ମାତ୍ର ନିଜର ପ୍ରିୟ ମାତୃଭୂମି ଇଟାଲିକୁ ଅଷ୍ଟ୍ରିଆର ଅତ୍ୟାଚାରୀ ଶାସନରୁ ମୁକ୍ତ କରିବା କଥା ଭୁଲିଯାଇ ନ ଥାନ୍ତି ।

ରିଓଗ୍ରାଣ୍ଡିର ସୈନ୍ୟମାନେ ଯେଉଁ ସହର ବା ଯେଉଁ ଅଞ୍ଚଳ ଅଧିକାର କରୁଥିଲେ ସେଠାରୁ ଧନସମ୍ପତ୍ତି ଲୁଟି କରି ଆଣୁଥିଲେ ; ମାତ୍ର ଗାରିବଲ୍‌ଡ଼ି ତାଙ୍କ ଅଧୀନରେ ଥିବା ସୈନ୍ୟମାନଙ୍କୁ ଏପରି ଅନ୍ୟାୟ କାର୍ଯ୍ୟ କରିବାକୁ ଦେଉ ନ ଥିଲେ ।

ଥରେ ସମୁଦ୍ରରେ ଯୁଦ୍ଧ ଚାଲିଥିଲାବେଳେ ତାଙ୍କ ଗଳାରେ ବନ୍ଧୁକର ଗୁଳି ବାଜିଲା । ସେ ଭାବିଲେ ଯେ ଅଳ୍ପ କେତେ ଘଣ୍ଟା ଭିତରେ ତାଙ୍କର ପ୍ରାଣବାୟୁ ଉଡ଼ିଯିବ । ସେତେବେଳକୁ ଜାହାଜ ଚଳାଇ ଜାଣିଥିବା ଅନ୍ୟ କୌଣସି ଲୋକ ସେଠାରେ ନ ଥିଲେ । ତେଣୁ ଗାରିବଲ୍‌ଡ଼ି ନିଜର କଷ୍ଟ କଥା ନ ଭାବି ଜଣେ କର୍ମଚାରୀଙ୍କୁ ଉପଦେଶ ଦେଇ ଜାହାଜ ଚଳାଇବାର ବ୍ୟବସ୍ଥା କଲେ ଓ ଜାହାଜଟି ବନ୍ଦରରେ ପହଞ୍ଚିଲା । କିଛି ସମୟ ପରେ ଗାରିବଲ୍‌ଡ଼ିଙ୍କ ବେକରୁ ଗୁଳିଟି ବାହାର କରାଗଲା ଓ ତାଙ୍କ ଜୀବନ ରକ୍ଷା ହୋଇଲା ।

ଆଉଥରେ ସେ ଶତ୍ରୁମାନଙ୍କ ହାତରେ ଧରାପଡ଼ିଲେ । ଗରିବାଲ୍ଡିଙ୍କ ପକ୍ଷରୁ ଯୁଦ୍ଧପାଇଁ କି ବନ୍ଦୋବସ୍ତ କରାଯାଇଛି ତାହା ଜାଣିବା ପାଇଁ ଶତ୍ରୁମାନେ ତାଙ୍କୁ ନାନା ପ୍ରଶ୍ନ ପଚାରିଲେ, ମାତ୍ର ସେ କିଛି କହିଲେ ନାହିଁ । ତହୁଁ ତାଙ୍କ ଉପରେ ଅତ୍ୟାଚାର ଚାଲିଲା । ତାଙ୍କର ଦୁଇ ହାତକୁ ଘର କଡ଼ିରେ ବାନ୍ଧି ତାଙ୍କୁ ଟାଙ୍ଗି ଦିଆଗଲା । ଏହିପରି ଦୁଇଦିନ ରହିଲେ ମଧ୍ୟ ସେ କିଛି କହିଲେ ନାହିଁ । ତାପରେ ତାଙ୍କୁ ହାତକଡ଼ି, ଗୋଡ଼କଡ଼ି ଦିଆଯାଇ ବନ୍ଦୀ କରି ରଖାଗଲା, ତଥାପି ତାଙ୍କଠାରୁ କୌଣସି କଥା ବାହାରିଲା ନାହିଁ । ଶେଷରେ ସେ ମୁକ୍ତ ପାଇ ପୁଣି ଗରିବାଲ୍ଡିଙ୍କ ସୈନ୍ୟମାନଙ୍କ ସଙ୍ଗେ ଯୋଗ ଦେଲେ ।

ଦିନେ ଭୟଙ୍କର ଯୁଦ୍ଧ ଚାଲିଥିବା ବେଳେ ଗାରିବଲ୍ଡ଼ି ଦେଖିଲେ ଯେ ଜଣେ ଇଟାଲିୟ ସୈନ୍ୟ ଆଘାତ ପାଇ ଭୂଇଁରେ ପଡ଼ିଛି । ଗୁଳି ବାରୁଦକୁ ଖାତିର ନ କରି ସେ ଯୁଦ୍ଧଭୂମିରୁ ସେହି ଆହତ ସୈନ୍ୟକୁ ନିରାପଦ ସ୍ଥାନକୁ ନେଇ ଯାଇଥିଲେ । ନିଜ ଦେଶବାସୀ ଲାଗି କି ମମତା !

ଏହିପରି ଚଉଦବର୍ଷ ଗତିଗଲା । ସୁଦୂର ଆମେରିକାରେ ରହି ଗାରିବଲ୍ଡ଼ି ସ୍ୱଦେଶର ଖବର ରଖୁଥିଲେ । ସେ ସଂବାଦ ପାଇଲେ ଯେ ଇଟାଲିର ଲୋକେ ଅଷ୍ଟ୍ରିଆର ଶାସନବିରୁଦ୍ଧରେ ବିଦ୍ରୋହ କରିବାକୁ ପ୍ରସ୍ତୁତ । କେବଳ ଜଣେ ଉପଯୁକ୍ତ ନେତାର ଅଭାବ ।

ତେଣୁ ଗାରିବଲ୍ଡ଼ି କାଳବିଳମ୍ବ ନ କରି ଇଟାଲି ଅଭି-ମୁଖରେ ଯାତ୍ରାକଲେ । ୧୮୪୮ ମସିହା ଜୁନ ମାସରେ ସେ ନାଇସ୍ ବନ୍ଦରରେ ପହଞ୍ଚିଲେ । ଇଟାଲିର ଲୋକେ ଗାରିବଲ୍ଡିଙ୍କର ଆମେରିକାରେ ସ୍ୱାଧୀନତା ଯୁଦ୍ଧର କଥା ଶୁଣିଥିଲେ । ତେଣୁ ସେମାନେ ସହସ୍ର ସହସ୍ର ସଂଖ୍ୟାରେ ଆସି ତାଙ୍କ ସଙ୍ଗେ ଯୋଗ ଦେଲେ ।

ଗାରିବଲ୍‌ଡ଼ି ଓ ତାଙ୍କ ସୈନ୍ୟମାନେ ନାଲକୁର୍ତ୍ତା ପିନ୍ଧୁଥିଲେ। ତେଣୁ ସେମାନଙ୍କୁ ନାଲକୁର୍ତ୍ତାଦଳ କୁହାଯାଉଥିଲା । ଏହି ଦଳରେ କଠୋର ଶୃଙ୍ଖଳା ଥିଲା ଓ ପ୍ରତ୍ୟେକ ସୈନ୍ୟ ଦେଶପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିଲା । ଗାରିବଲ୍‌ଡ଼ି ଏହି ଦେଶଭକ୍ତ ସୈନ୍ୟ-ମାନଙ୍କୁ ନେଇ ଇଟାଲିକୁ ସ୍ୱାଧୀନ କରିବାପାଇଁ ପ୍ରତିଜ୍ଞା କଲେ ।

ଅଷ୍ଟ୍ରିଆନମାନେ ଏହି ସୈନ୍ୟମାନଙ୍କୁ ଦମନ କରିବାପାଇଁ ଫରାସୀମାନଙ୍କର ସାହାଯ୍ୟ ନେଲେ । ଅଷ୍ଟ୍ରିଆ ଓ ଫ୍ରାନ୍‌ସର ମିଳିତ ସୈନ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରିବା ଗାରିବଲ୍‌ଡ଼ିଙ୍କ ସ୍ୱଳ୍ପସଂଖ୍ୟକ ସୈନ୍ୟମାନଙ୍କ ପକ୍ଷରେ ସହଜ ନ ଥିଲା । ଅନେକ ସମୟରେ ସେମାନେ ହାରିଯାଇ ପାହାଡ଼ିଆ ଅଞ୍ଚଳରେ ଆଶ୍ରୟ ନେଉଥିଲେ । ସେଠାରେ ସେମାନଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ୁଥିଲା । ଥରେ ରୋମରେ ଯୁଦ୍ଧ ଲାଗିଥିଲା ବେଳେ ଗାରିବଲ୍‌ଡ଼ି ଓ ତାଙ୍କ ସୈନ୍ୟ-ମାନେ ଦେଖିଲେ ଯେ ସେଠାରୁ ପଳାଇଯିବା ଛଡ଼ା ଅନ୍ୟଗତି ନାହିଁ । ଗାରିବଲ୍‌ଡି ନିଜର ସୈନ୍ୟମାନଙ୍କୁ କହିଲେ, "ବର୍ତ୍ତମାନ ସଙ୍କଟକାଳ ଉପସ୍ଥିତ । ଯେଉଁମାନେ ମୋ ସହିତ ଚାଲିଯିବାକୁ ଚାହାଁନ୍ତି, ସେମାନଙ୍କୁ ଅନାହାର, ଖରା ବର୍ଷା ଆଦି ସହିବାକୁ ପଡ଼ିବ । ରହିବାକୁ ଘର କି ତମ୍ବୁ, ଖାଇବା ପାଇଁ ରସଦ, ଏପରିକି ଗୋଳାବାରୁଦ ମଧ୍ୟ ମିଳିବ ନାହିଁ । ଯେଉଁମାନେ ଆତ୍ମସମ୍ମାନ, ସ୍ୱାଧୀନତା ଓ ମାତୃଭୂମିକୁ ଆଦର କରନ୍ତି କେବଳ ସେହିମାନେ ମୋ ସାଥିରେ ଚାଲନ୍ତୁ ।

ପ୍ରାୟ ତିନି ହଜାର ଲୋକ ଗାରିବଲ୍‌ଡ଼ିଙ୍କ ସାଥିରେ ଯିବାକୁ ପ୍ରସ୍ତୁତ ହେଲେ । କେତେକ ସ୍ତ୍ରୀ ଲୋକ ମଧ୍ୟ ନିଜ ନିଜ ସ୍ୱାମୀ ବା ପୁଅଙ୍କ ସହିତ ଚାଲିଲେ । ଏଣେ ଅଷ୍ଟ୍ରିଆନମାନେ ସେମାନଙ୍କ

ପଛେ ପଛେ ଧାଇଁଥାନ୍ତି । ଗାରିବଲ୍‌ଡ଼ି ଓ ତାଙ୍କ ଲୋକେ ବାଟରେ ନାନା କଷ୍ଟ ସହି ଶେଷରେ ସାନ୍‌ମେରିଇନୋ ରାଜ୍ୟରେ ପହଞ୍ଚିଲେ । ସେତେବେଳକୁ ସେମାନଙ୍କ ଦେହରେ ଛିଣ୍ଡାକନା ମାତ୍ର ଥାଏ, ଖାଦ୍ୟାଭାବରେ ଦେହର ହାଡ଼ ଗଣି ହୋଇ ଯାଉଥାଏ । ଅନେକେ ଚାଲିବାକୁ ମଧ୍ୟ ଅକ୍ଷମ ହୋଇ ପଡ଼ିଥାନ୍ତି । ତଥାପି ସେମାନଙ୍କ ମନର ବଳ କମିଯାଇ ନ ଥାଏ ।

ସାନମେରିଇନୋର ଲୋକେ ଏହି ଦେଶପ୍ରେମୀ ନେତା ଓ ତାଙ୍କ ଅନୁଚରମାନଙ୍କର ସକଳ ପ୍ରକାର ଯତ୍ନ ନେଲେ । ଏଣେ ଅଷ୍ଟ୍ରିଆନମାନେ ସାନ୍‌ମେରିଇନୋ ସରକାରଙ୍କ ପାଖେ ଦାବୀ କଲେ—"ବିଦ୍ରୋହୀ ଗାରିବଲ୍‌ଡ଼ିଙ୍କୁ ଆମ ହାତରେ ଛାଡ଼ିଦିଅ ।" ତାହା ହୋଇଥିଲେ ନିଶ୍ଚୟ ତାଙ୍କର ମୃତ୍ୟୁଦଣ୍ଡ ହୋଇଥାନ୍ତା । କିନ୍ତୁ ସାନମେରିଇନୋର ଗଭର୍ଣ୍ଣର ତାଙ୍କୁ ଅଷ୍ଟ୍ରିଆନମାନଙ୍କ ହାତରେ ଛାଡ଼ି ନ ଦେଇ ବ୍ୟବସ୍ଥା କଲେ ଯେ ଗାରିବଲ୍‌ଡ଼ିଙ୍କୁ ସଙ୍ଗେ ସଙ୍ଗେ ଜାହାଜରେ ଆମେରିକା ପଠାଇଦିଆଯିବ । ଅବଶ୍ୟ ଗାରିବଲ୍‌ଡ଼ି-ଙ୍କର ଆମେରିକା ଯିବାକୁ ଆଦୌ ଇଚ୍ଛା ନଥିଲା । ତେଣୁ ରାତି ଅଧରେ ଗାରିବଲ୍‌ଡ଼ି ଦୁଇଶହ ଅନୁଚରଙ୍କୁ ନେଇ ପଳାଇଲେ ।

ବାଟରେ ନାନା କଷ୍ଟ ଓ ଝଡ଼ବର୍ଷା ସହି ସହି ଗାରିବଲ୍‌ଡ଼ିଙ୍କ ସ୍ତ୍ରୀ ପ୍ରାଣ ହରାଇଲେ । ଗାରିବଲ୍‌ଡ଼ି ତାଙ୍କ ଶବକୁ ଗୋଟିଏ ବଣ ମଧ୍ୟରେ ପୋତିଦେଇ ସାଥିମାନଙ୍କ ସଙ୍ଗେ ଚାଲିଲେ । ଅଷ୍ଟ୍ରିଆନ-ମାନେ ତାଙ୍କର ସନ୍ଧାନ ନେଉଥାନ୍ତି ।

ଥରେ ସେ ଗୋଟିଏ ଅନୁଚର ସହିତ ଗୋଟିଏ ଗାଁରେ ପହଞ୍ଚିଲେ । କିଛି ଖାଇବା ପାଇଁ ଦୁହେଁଯାକ ଗୋଟିଏ ଚଟିଘରେ ବସିଲେ । ସେତେବେଳକୁ ତାଙ୍କ ଦେହରେ ଲାଲକୁର୍ତ୍ତା ନ ଥାଏ ।

ଗାରିବଲ୍ଡ଼ି ଚିନ୍ତା ଓ ଦୁଃଖରେ ଶୁଖିଯାଇଥାନ୍ତି । ସେ ମୁଣ୍ଡରେ ହାତଦେଇ ବସିଛନ୍ତି ; ଏହି ସମୟରେ ତାଙ୍କୁ ଖୋଜୁଥିବା ଅଷ୍ଟ୍ରିଆନ୍ ସୈନ୍ୟମାନେ ସେଠାରେ ପହଞ୍ଚିଗଲେ । ଭାଗ୍ୟକୁ ସେମାନେ ଗାରିବଲ୍ଡ଼ିଙ୍କୁ ଚିହ୍ନି ନ ପାରି ସେଠାରୁ ଚାଲିଗଲେ ।

ଗାରିବଲ୍ଡ଼ି ପୁଣି ଆମେରିକାରେ ଆଶ୍ରୟ ନେବା ଛଡ଼ା ଅନ୍ୟ ଉପାୟ ଦେଖି ପାରିଲେ ନାହିଁ । ସେ ନାଇସ ସହରକୁ ଯାଇ ନିଜର ମାଆ ଓ ପୁଅ ଝିଅମାନଙ୍କ ଠାରୁ ବିଦାୟ ନେଇ ଜାହାଜରେ ବସିଲେ ।

ସେ ଆମେରିକାର ନିଉୟର୍କ ସହରରେ ପହଞ୍ଚିଲେ । ଏଠାରେ ମଧ୍ୟ ତାଙ୍କର ଶାନ୍ତି ନ ଥିଲା । ଜଣେ ଇଟାଲୀୟଙ୍କର ଏଠାରେ ଗୋଟିଏ ବତି ଦୋକାନ ଥିଲା । ଗାରିବଲ୍ଡ଼ି ସେହି ଦୋକାନରେ କାମ କରି ଯାହା ଅର୍ଜୁଥିଲେ, ତାହା ନିଜ ମାଆ ଓ ପିଲାମାନଙ୍କ ପାଇଁ ପଠାଉଥିଲେ ।

କାଳକ୍ରମେ ତାଙ୍କ ଭାଗ୍ୟ ବଦଳିଲା । ଶେଷରେ ସେ ଜୟଲାଭ କଲେ । ୧୮୫୯ ଖ୍ରୀଷ୍ଟାବ୍ଦରେ ସେ ସ୍ୱେଚ୍ଛାସେବକ ବାହିନୀର ଅଧିନାୟକ ଭାବରେ ଅନେକ ଯୁଦ୍ଧରେ ଅଷ୍ଟ୍ରିଆନ୍‌ମାନଙ୍କୁ ପରାସ୍ତ କଲେ ।

ଇଟାଲି ଅଷ୍ଟ୍ରିଆ କବଳରୁ ମୁକ୍ତ ପାଇଲା । ସ୍ୱାଧୀନ ଇଟାଲିର ଜନ୍ମଦାତା ଗାରିବଲ୍ଡ଼ି ଇଟାଲିର ରାଜା ଭିକ୍ଟର ଇମାନୁଏଲଙ୍କ ସହିତ ଲୋକସାଧାରଣଙ୍କର ପ୍ରଶଂସା ଲାଭ କଲେ । କୋଟିଏ ଇଟାଲୀୟଙ୍କୁ ସ୍ୱାଧୀନତା ଦେଇଥିବାରୁ ସେ ଏବେ ସୁଦ୍ଧା ଇଟାଲିର ଇତିହାସରେ ଅମର ।

ଗାରିବଲ୍‌ଡ଼ି ଖାଲି ଜଣେ ବିଚକ୍ଷଣ ସୈନିକ ନ ଥିଲେ ; ସେ ସ୍ୱାଧୀନତାକୁ ଭଲ ପାଉଥିଲେ । କେବଳ ପରାଧୀନ ଇଟାଲୀୟ-ମାନଙ୍କ କଥା ସେ ଭାବୁ ନ ଥିଲେ ; ଜଗତର ସକଳ ପରାଧୀନ ଜାତି ପ୍ରତି ତାଙ୍କର ସହାନୁଭୂତି ଥିଲା । ଥରେ କେତେକ ବ୍ୟକ୍ତି ତାଙ୍କୁ ଗୁଡ଼ାଏ ବହୁମୂଲ୍ୟ ଉପହାର ଦେଇଥିଲେ । ମାତ୍ର ସେ ସେଗୁଡ଼ିକୁ ନିଜପାଇଁ ନ ରଖି ତାହାର ବିକ୍ରୟ ଲବ୍‌ଧ ଧନ ଅଷ୍ଟ୍ରିଆର ଦରିଦ୍ର-ମାନଙ୍କ ପାଇଁ ପଠାଇ ଦେଇଥିଲେ ।

ସେ ସ୍ୱାଧୀନ ଇଟାଲିର ପାର୍ଲିଆମେଣ୍ଟରେ ଜଣେ ସଦସ୍ୟ ଥିଲେ । ପାର୍ଲିଆମେଣ୍ଟରେ ଯୋଗଦେବାକୁ ସେ ରୋମକୁ ଆସିଲା-ବେଳେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାପାଇଁ ସହସ୍ର ସହସ୍ର ଲୋକ ରୁଣ୍ଡ ହେଉଥିଲେ ।

ଧନପ୍ରତି ତାଙ୍କର ଆଦୌ ଲୋଭ ନ ଥିଲା । ତାଙ୍କର ଗୁଣମୁଗ୍‌ଧ ଲୋକେ ତାଙ୍କୁ ବହୁତ ଅର୍ଥ ଦେଉଥିଲେ । ମାତ୍ର ତାହା ସେ ନିଜ ବ୍ୟବହାରରେ ନ ଲଗାଇ ଦରିଦ୍ରମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ ।

୧୮୮୨ ଖ୍ରୀଷ୍ଟାବ୍ଦର ଜୁନମାସ ଦୁଇ ତାରିଖରେ ଏହି ମହାପୁରୁଷଙ୍କର ପରଲୋକପ୍ରାପ୍ତି ଘଟିଥିଲା । ଦେଶର ସ୍ୱାଧୀନତା-ଲାଗି ଯେଉଁମାନେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ ଯାଇଛନ୍ତି,ସେମାନଙ୍କ ମଧ୍ୟରେ ଗାରିବଲ୍‌ଡ଼ି ଚିରଦିନ ଉଚ୍ଚ ସ୍ଥାନ ଲାଭ କରିବେ ।

---

# ସାମ୍ୟବାଦର ଅଗ୍ରଦୂତ ଲେନିନ୍

ଜଗତର ଦୁଃଖୀ ଏବଂ ଦରିଦ୍ରଙ୍କ ପାଇଁ ଯେଉଁ ବୀରଗଣ ଜୀବନ ଦାନ କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ଲେନିନ୍‌ଙ୍କ ନାମ ଅଧିକ ସ୍ମରଣୀୟ । ଲେନିନ୍ ଜଣେ ମହାନ୍ ବିପ୍ଳବୀ ଥିଲେ । କୃଷୀ, ମୂଲିଆ ଶ୍ରେଣୀ ଲୋକମାନଙ୍କର ଉନ୍ନତି ପାଇଁ ସେ ଆଜୀବନ ସାଧନା କରିଯାଇ ଅଛନ୍ତି ।

ରୁଷିଆର ସମ୍ରାଟମାନଙ୍କୁ 'ଜାର୍' କୁହାଯାଏ । ସେମାନେ ଅତ୍ୟନ୍ତ ଅତ୍ୟାଚାରୀ ଥିଲେ । ଜାରୁ ଶାସନ କାଳରେ ରୁଷିଆର୍ ଲୋକଙ୍କର ଦୁଃଖଦୁର୍ଦ୍ଦଶାର ସୀମା ନ ଥିଲା । ଲୋକମାନଙ୍କର କୌଣସି କଥାରେ ଅଧିକାର ନ ଥିଲା । ଜନସାଧାରଣ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେହେଁ ଜାର୍‌ଙ୍କ ଅତ୍ୟାଚାର ଉପରେ କେହି ପାଟି ଫିଟାଇ ପାରୁ ନ ଥିଲେ । ରୁଷିଆର କୋଟି କୋଟି ଲୋକଙ୍କୁ ପ୍ରବଳପ୍ରତାପୀ ଜାର୍‌ଙ୍କ କବଳରୁ



[ ଲେନିନ୍ ]

ରକ୍ଷା କରିଥିଲେ ଜଣେ ସାମାନ୍ୟ କୃଷକର ସନ୍ତାନ । ସେ ହେଉଛନ୍ତି ମହାପୁରୁଷ ଲେନିନ୍ ।

ଲେନିନ୍ ୧୮୭୦ ଖ୍ରୀଷ୍ଟାବ୍ଦର ଅପ୍ରେଲ୍ ୧୦ ତାରିଖ ଦିନ ଭଲ୍‌ଗା ନଦୀ ତୀରବର୍ତ୍ତୀ ଉଲାନ୍‌ଭସ୍କ ନଗରରେ ଗୋଟିଏ ଦରିଦ୍ର

କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଇଲିଇଚ ଏବଂ ମା'ଙ୍କ ନାମ ହେଉଛି ଏଲକ୍‌ଜେଣ୍ଡ୍ରିଭନା ।

ଲେନିନ୍ ବାଲ୍ୟକାଳରୁ ଅତ୍ୟନ୍ତ ମେଧାବୀ ଏବଂ ପରିଶ୍ରମୀ ଥିଲେ । ସେ ପିଲାଦିନୁ ତାଙ୍କର ମାତୃଭୂମିକୁ ଅତ୍ୟନ୍ତ ଭଲ ପାଉଥିଲେ । ନିଜ ଦେଶର ନିନ୍ଦା ବା ଅପଖ୍ୟାତି ସେ ଆଦୌ ସହି ପାରୁ ନ ଥିଲେ । ଲେନିନ୍ ଥିଲେ ପିଲାଦିନୁ ବିପ୍ଲବୀ । କୌଣସି ଅନ୍ୟାୟକୁ ନୀରବରେ ସହ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ତାଙ୍କର ବଡ଼ଭାଇ ଆଲେକ୍‌ଜାଣ୍ଡର ଉଲିଆନଭ ମଧ୍ୟ ଜଣେ ବିପ୍ଳବୀ ଥିଲେ । ବିପ୍ଳବୀମାନଙ୍କର ଗୁପ୍ତ ସମିତିରେ ସଭ୍ୟ ଥାଇ ସେ ଧରାପଡ଼ି ରୁଷ ସମ୍ରାଟ ତୃତୀୟ ଆଲେକ୍‌ଜାଣ୍ଡରଙ୍କ ଦ୍ୱାରା ମୃତ୍ୟୁଦଣ୍ଡ ପାଇଥିଲେ । ବଡ଼ଭାଇଙ୍କର ଏଭଳି ମୃତ୍ୟୁଦଣ୍ଡ ଯୋଗୁ ଦେଶଭକ୍ତ ଲେନିନ୍ ବିଚଳିତ ହୋଇ ପଡ଼ିଥିଲେ ଏବଂ ଅତ୍ୟାଚାରୀ ଜାର୍‌ଙ୍କ କବଳରୁ ଦେଶକୁ ଉଦ୍ଧାର କରିବେ ବୋଲି ପଣ କରିଥିଲେ ।

ଗ୍ରାମ ସ୍କୁଲରେ ଲେନିନ୍ ଗ୍ରୀକ୍ ଓ ଲାଟିନ୍ ଭାଷା ଶିକ୍ଷା କରିଥିଲେ । ପରେ ସେ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରି ବାରିଷ୍ଟରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେହେଁ ତାହା ତାଙ୍କୁ ସନ୍ତୋଷ ଦେଇ ପାରି ନ ଥିଲା । ଛାତ୍ରଜୀବନରେ ମଧ୍ୟ ସେ ଦଳଗଠନ କରି ବିପ୍ଳବ ଭାବ ପ୍ରଚାର କରିବାରୁ ତାଙ୍କୁ ନାନା ଦୁର୍ଦ୍ଦଶା ସହ୍ୟ କରିବାକୁ ହୋଇଥିଲା । ସେ କାରଖାନାର ଶ୍ରମିକମାନଙ୍କୁ ସଂଗଠିତ କଲେ । ଦେଶର ଗରିବ କୃଷୀ, ମୂଲିଆ ଏବଂ ଶ୍ରମିକମାନଙ୍କ ସହିତ ମିଶି ସେ ସେମାନଙ୍କ ଦୁର୍ଦ୍ଦଶା ବୁଝୁଥିଲେ ଏବଂ ସେମାନେ ବିପ୍ଳବ କରନ୍ତୁ ବୋଲି ମତାଉଥିଲେ । ଦେଶ ଲୋକଙ୍କର ଦୁଃଖ, ଦୁର୍ଦ୍ଦଶା ଏବଂ ଜାର୍‌ଙ୍କ ଅନ୍ୟାୟ ବିର

ବର୍ଣ୍ଣନା କରି ସେ ଅସଂଖ୍ୟ ଲେଖା ପ୍ରକାଶ କରିବାକୁ ଲାଗିଲେ । ଏହି ଉଦ୍ଦେଶ୍ୟରେ ଦେଶ ଭିତରେ ଏବଂ ବାହାରେ ସେ ଏକାଧିକ ପତ୍ରିକା ପ୍ରକାଶ କରି ପ୍ରଚାର କରୁଥିଲେ ।

ଲେନିନ୍‌ଙ୍କ କାର୍ଯ୍ୟକଳାପ ରୁଷସମ୍ରାଟ ଜାର୍‌ଙ୍କୁ ବଡ଼ ଅସହ୍ୟ ହେଲା । ଏହି ଆପତ୍ତିଜନକ କାର୍ଯ୍ୟ ପାଇଁ ଲେଲିନ୍ ବନ୍ଦୀ ହେଲେ ଏବଂ ତାଙ୍କୁ ସାଇବେରିଆର ଏକ ଜେଲଖାନାକୁ ପଠାଇ ଦିଆଗଲା । ସେହି ବରଫାଞ୍ଚଳରେ ଲେନିନ୍ ଅତ୍ୟନ୍ତ ଦୁଃଖ ସହ୍ୟ କରି ମଧ୍ୟ ଦବି ଯାଇ ନ ଥିଲେ । ବରଂ ଅପୂର୍ବ ଉତ୍ସାହରେ ସେ ବିପ୍ଳବର ବାଣୀ ଗୁପ୍ତରେ ପ୍ରଚାର କରିବାକୁ ଲାଗିଲେ ।

ତାଙ୍କର ସ୍ତ୍ରୀଙ୍କର ନାମ ହେଉଛି କନଷ୍ଟାଣ୍ଟିନଭନା । ସେ ଥିଲେ ଲେନିନ୍‌ଙ୍କର ଉପଯୁକ୍ତ ସହଧର୍ମିଣୀ । ଲେନିନ୍‌ଙ୍କ ଏହି ବୈପ୍ଳବିକ ଜୀବନରେ ସେ ସର୍ବଦା ସାହାଯ୍ୟ କରୁଥିଲେ ।

୧୯୦୭ ଖ୍ରୀଷ୍ଟାବ୍ଦରେ ଲେନିନ୍ ବାଧ୍ୟହୋଇ ଦେଶତ୍ୟାଗୀ ହେଲେ । ସେ ପ୍ରଥମେ ହଙ୍ଗେରୀ ଯାଇ ସେଠାରୁ ଇଉରୋପର ବିଭିନ୍ନ ଦେଶ ଭ୍ରମଣ କରି ନୂତନ ଅଭିଜ୍ଞତା ଲାଭ କଲେ । ଏହି ସମୟରେ ରୁଷ ଦେଶରେ ବାରମ୍ବାର ବିପ୍ଳବ ହେଉଥାଏ ଏବଂ ଜାର୍ ସେହି ବିପ୍ଳବକୁ ଅତ୍ୟନ୍ତ ନିର୍ମମ ଭାବରେ ଦମନ କରି ଦେଉଥାନ୍ତି । ଫଳରେ ଲୋକଙ୍କ ମଧ୍ୟରେ ହତାଶା ଭାବ ଖେଳି ଯାଉଥାଏ ।

ବିଦେଶରେ ଲେନିନ୍ ଅତ୍ୟନ୍ତ ଦୁଃଖରେ କାଳ କଟାଉଥାନ୍ତି । ଅର୍ଥ ଅଭାବରୁ କେବେ କେବେ ତାଙ୍କୁ ଖାଦ୍ୟ କିମ୍ବା ଔଷଧ ମଧ୍ୟ ମିଳୁ ନ ଥିଲା । ତଥାପି ସେ ଦେଶ ଉଦ୍ଧାର କାର୍ଯ୍ୟରେ କେବେ ହେଲେ ପଛଘୁଞ୍ଚା ଦେଇ ନ ଥିଲେ । ବିଦେଶରେ ଥିଲେ ମଧ୍ୟ ଲେନିନ୍ ଦେଶ ମଧ୍ୟରେ ଥିବା ବିପ୍ଳବୀମାନଙ୍କୁ ଉପଯୁକ୍ତ ନିର୍ଦ୍ଦେଶ ଓ ପରାମର୍ଶ ଦେଉ-

ଥିଲେ । ରୁଷ ପାର୍ଲାମେଣ୍ଟରେ ଶ୍ରମିକମାନଙ୍କ ପ୍ରତିନିଧି ଲେନିନ୍‌ଙ୍କ ଦ୍ୱାରା ପରିଚାଳିତ ହେବାରୁ ଜାର୍ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । ତେଣୁ ସେ କଠୋର ଆଇନ ପ୍ରୟୋଗ କରି ପାର୍ଲାମେଣ୍ଟର କ୍ଷମତା ହ୍ରାସ କରିବାପାଇଁ ଉଦ୍ୟମ କରୁଥିଲେ ।

ପ୍ରଥମ ମହାଯୁଦ୍ଧର ଦୁର୍ବିପାକ ମଧ୍ୟରେ ରୁଷିଆର ଜନସାଧାରଣ ଏବଂ ସୈନ୍ୟବାହିନୀ ମଧ୍ୟରେ ଭୟଙ୍କର ଅସନ୍ତୋଷ ଦେଖା ଦେଇଥାଏ । ରୁଷିଆର କେତେକ ଅଞ୍ଚଳରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥାଏ । ସର୍ବତ୍ର ଖାଦ୍ୟାଭାବ ଏବଂ ଚରମ ଅସନ୍ତୋଷ ଲାଗି ରହିଥାଏ । ତେଣୁ କେବଳ ଜନସାଧାରଣଙ୍କ ମଧ୍ୟରେ ନୁହେଁ, ସେନାବାହିନୀରେ ମଧ୍ୟ ବିପ୍ଳବ ଦେଖା ଦେଲା । ଫଳରେ ଜାର୍ ବନ୍ଦୀ ହେଲେ ଏବଂ ତାଙ୍କୁ ବିପ୍ଳବୀମାନେ ହତ୍ୟା କଲେ । ଲେନିନ୍ ଦେଖିଲେ ଯେ ଦେଶରେ ଭୟଙ୍କର ଅରାଜକତା ଉପସ୍ଥିତ ହୋଇଅଛି । ଯଦି ସେ ଦେଶରେ ଉପସ୍ଥିତ ନ ହୁଅନ୍ତି, ତେବେ ଅବସ୍ଥା ଅସମ୍ଭାଳ ହୋଇ ଉଠିବ । ଅଥଚ ସର୍ବତ୍ର ଯୁଦ୍ଧ ଲାଗିଥିବାରୁ ନିରାପଦରେ ଦେଶରେ ପହଞ୍ଚିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ତାହା ଛଡ଼ା ତାଙ୍କର କେତେକ ପ୍ରତିପକ୍ଷ ଲୋକ ସେ ଦେଶକୁ ଫେରି ଆସନ୍ତୁ ବୋଲି ଚାହୁଁ ନ ଥିଲେ । ତାଙ୍କ ପଛେ ପଛେ ଶତ୍ରୁମାନଙ୍କର ଚର ମଧ୍ୟ ଲାଗିଥିଲେ । ମାତ୍ର ନିଜର ଜୀବନକୁ ଭ୍ରୂକ୍ଷେପ ନ କରି ଲେନିନ୍ ସେହି ବିପଦପୂର୍ଣ୍ଣ ଅବସ୍ଥାରେ ଗୋଟିଏ ରେଲ ଡବାରେ ଲୁଚି ଦେଶକୁ ଫେରି ଆସିଥିଲେ ଏବଂ ଦେଶର ଦାୟିତ୍ୱ ଗ୍ରହଣ କରିଥିଲେ । ତଥାପି ଲେନିନ୍‌ଙ୍କର ବିପଦର ସୀମା ନ ଥିଲା । ଏହି ବିପଦକାଳରେ ତାଙ୍କର ଜଣେ ପରମ ବନ୍ଧୁ ଥିଲେ ମହାନ୍ ବିପ୍ଳବୀ ଟ୍ରଟସ୍କି ।

ଟ୍ରଟ୍‌ସ୍କିଙ୍କ ଉପରେ ସଂଗଠନ ପୃଥିବୀରେ ବିରଳ ବୋଲି କୁହାଯାଏ । ସେ ରକ୍ତବାହିନୀ ନାମରେ ଗୋଟିଏ ଶକ୍ତିଶାଳୀ ସାମରିକ ବାହିନୀ ଗଠନ କଲେ । ଏହି ସୈନ୍ୟବାହିନୀରେ ଦେଶର ପ୍ରାୟ ସବୁ ଶ୍ରେଣୀର ଲୋକଙ୍କର ସହଯୋଗ ରହିଥିଲା । ଲେନିନ୍ ରୁଷିଆର ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲେ ଏବଂ ତାଙ୍କ ନେତୃତ୍ୱରେ ରୁଷିଆର ବିପ୍ଳବ ସଫଳ ହୋଇଥିଲା ।

ଲେନିନ୍ କେବଳ ବିପ୍ଳବୀ ନ ଥିଲେ ; ସେ ଥିଲେ ଜଣେ ମହାନ୍ ସଂଗଠକ । ତାଙ୍କର ଧୈର୍ଯ୍ୟ ଏବଂ ବିଚକ୍ଷଣ କୂଟନୀତିର ତୁଳନା ନାହିଁ । ଲେନିନ୍ ଶାସନ ଦାୟିତ୍ୱ ଗ୍ରହଣ କଲାବେଳେ ନାନା ଅସୁବିଧାର ସମ୍ମୁଖୀନ ହେଲେ । ରୁଷିଆର ଚତୁର୍ଦ୍ଦିଗରେ ଥିବା ପଡ଼ୋଶୀ ରାଜ୍ୟଗୁଡ଼ିକ ସେତେବେଳେ ଲେନିନ୍‌ଙ୍କ ବିପ୍ଳବକୁ ସମର୍ଥନ କରୁ ନ ଥିଲେ । ତେଣୁ ଅନେକ ରାଷ୍ଟ୍ର ରୁଷିଆ ସହିତ ଅସହଯୋଗ କଲେ । ଏହି ଘଟଣାରେ ଲେନିନ୍ ବିଚଳିତ ନ ହୋଇ ଏକ ନୂଆ ସମାଜ ଗଠନରେ ଲାଗିପଡ଼ିଲେ । ଦେଶର କୃଷି,ଶିଳ୍ପ, ବାଣିଜ୍ୟ ଇତ୍ୟାଦି ବିଭିନ୍ନ ଦିଗରେ ବହୁତ ଉନ୍ନତି ଦେଖାଦେଲା । ବିଜ୍ଞାନ ସାହାଯ୍ୟରେ ଅଳ୍ପକାଳ ମଧ୍ୟରେ ଦେଶର ଉନ୍ନତି ପାଇଁ ଉଦ୍ୟମ କରାଗଲା । ଦେଶରେ ନିରକ୍ଷରତା ବିରୁଦ୍ଧରେ ସଂଗ୍ରାମ ଚାଲିଲା । ସମ୍ପତ୍ତିରେ କାହାର ବ୍ୟକ୍ତିଗତ ଅଧିକାର ରହିଲା ନାହିଁ । ପ୍ରତ୍ୟେକ ଲୋକର ଯାବତୀୟ ଆବଶ୍ୟକତା ପାଇଁ ରାଷ୍ଟ୍ର ଦାୟୀ ରହିଲା ଏବଂ ପ୍ରତ୍ୟେକେ ନିଜ ଶକ୍ତି ଅନୁସାରେ ରାଷ୍ଟ୍ରପାଇଁ କାର୍ଯ୍ୟ କଲେ । ଦେଶରେ ଶୋଷଣ ପାଇଁ କୌଣସି ଅବକାଶ ରହିଲା ନାହିଁ । ଏହି ନୀତିରେ ରାଜ୍ୟ ଚାଲିଲା । ନାନା ଯୋଜନା ଜରିଆରେ ଦେଶରେ ଅଭୂତପୂର୍ବ ଉନ୍ନତି ସାଧିତ ହେଲା ।

ଅଳ୍ପକାଳ ମଧ୍ୟରେ ତାର୍ ଅତ୍ୟାଚାରିତ ରୁଷିଆରେ ନୂଆ ଜୀବନ ଦେଖାଦେଲା । ଲେନିନ୍ ରୁଷିଆର ଯେଉଁ ନୂଆ ସମାଜର ଗଠନ କଲେ, ତାହାକୁ ସାମ୍ୟବାଦୀ ସମାଜ କୁହାଗଲା ।

ଲେନିନ୍‌ଙ୍କ ଶାସନ ଖସଡ଼ାରେ ବ୍ୟକ୍ତିଗତ ମାଲିକାନା ଲୋପ ପାଇଲା ଏବଂ ସମଗ୍ର ସମାଜର ଅଧିକାର ସାବ୍ୟସ୍ତ ହେଲା । ରାଜ୍ୟରେ କେହି ଦୁଃଖୀ ରହିବେ ନାହିଁ, କେହି କାହାକୁ ଶୋଷଣ କରିବେ ନାହିଁ, ସମସ୍ତେ ଯେପରି ସୁଖରେ ରହିବେ, ଏହାହିଁ ଥିଲା ଲେନିନ୍‌ଙ୍କର ଜୀବନର ସାଧନା ।

ଲେନିନ୍ ଆଜ ନାହାନ୍ତି ; କିନ୍ତୁ ତାଙ୍କର ଅମର କାହାଣୀ ଲୋକେ ଏବେ ଘୋଷି ହେଉଛନ୍ତି । ତାଙ୍କର ସ୍ମୃତିକୁ ଅମର କରି ରଖିବାପାଇଁ ରୁଷିଆର ଏକ ସହରକୁ ତାଙ୍କର ନାମାନୁସାରେ ଲେଲିନ୍‌ଗ୍ରେଡ୍ ନାମକରଣ କରାଯାଇଛି । ଲେନିନ୍‌ଙ୍କ ଭଳି ବିପ୍ଳବୀ ଇତିହାସରେ ବିରଳ ।

———

# ବିଶ୍ୱବନ୍ଧୁ ଡାକ୍ତର ଜେନର

ମନୁଷ୍ୟକୁ ଭିନ୍ନ ଭିନ୍ନ ରୋଗ ଆକ୍ରମଣ କରିଥାଏ । ଲୋକ କପରି ଏହି ସବୁ ରୋଗରୁ ରକ୍ଷା ପାଇବ, ସେଥିପାଇଁ କାଳକ୍ରମେ ଉପାୟ ବାହାରୁଅଛି । ଗୋଟିଏ ଗୋଟିଏ ରୋଗର ପ୍ରତିକାର ଓ ପ୍ରତିଷେଧ ପାଇଁ କେତେ କେତେ ମହାପୁରୁଷ ଚେଷ୍ଟା କରିଯାଇ-ଅଛନ୍ତି । ଏବେ ମଧ୍ୟ କେତେକ ରୋଗରୁ ମୁକ୍ତି ପାଇବାପାଇଁ ପ୍ରତିକାର ବାହାର କରିବା ନିମନ୍ତେ ଚେଷ୍ଟା ଚାଲିଛି ।

ପ୍ରାୟ ଦୁଇଶହ ବର୍ଷ ପୂର୍ବେ ପୃଥିବୀର ସବୁ ଦେଶରେ ବସନ୍ତ ରୋଗ ଅତି ପ୍ରବଳ ଥିଲା । ଏ ରୋଗ ବଡ଼ ସଂକ୍ରାମକ । ତେଣୁ ଜଣକଠାରେ ବସନ୍ତ ହେଲେ ତାହାଠାରୁ ତେଇଁ ଏହା ବହୁ ଲୋକଙ୍କୁ ଆକ୍ରମଣ କରେ । ଏହାଦ୍ୱାରା ପ୍ରତିବର୍ଷ ଲକ୍ଷ ଲକ୍ଷ ଲୋକ ମରୁଥିଲେ । ଅନେକ ଲୋକ ଅନ୍ଧ, ଚଗୁଡ଼ା ହୋଇ ଯାଉଥିଲେ ।



[ଏଡ୍‌ୱାର୍ଡ୍ ଜେନର]

ବସନ୍ତ ରୋଗରେ ଯେଉଁମାନେ ପ୍ରାଣ ହରାନ୍ତି ନାହିଁ, ସେମାନଙ୍କ ଦେହରେ ଚିରଦିନପାଇଁ ଏକ ପ୍ରକାର ଦାଗ ରହିଯାଏ । ଏହା ଫଳରେ ସେମାନଙ୍କର ସୌନ୍ଦର୍ଯ୍ୟ ଲୋପ ପାଏ ।

ଇଙ୍ଗଲଣ୍ଡ, ଏସିଆ ଓ ଆଫ୍ରିକା ମହାଦେଶରେ ଏହାର ବିଶେଷ ପ୍ରାଦୁର୍ଭାବ ଥିଲା । ବର୍ଷେ ରୁଷିଆ ଦେଶରେ ଦଶଲକ୍ଷ ଲୋକ କେବଳ ଏହି ରୋଗରେ ପ୍ରାଣ ହରାଇଥିଲେ । ସେ କାଳର ଡାକ୍ତରମାନେ ଏ ରୋଗର କୌଣସି ପ୍ରତିକାର କରିପାରୁ ନ ଥିଲେ । ଫଳରେ ରୋଗୀ ଆପଣା ଭାଗ୍ୟ ଉପରେ ନିର୍ଭର କରିବା ଛଡ଼ା ଉପାୟ ନ ଥିଲା ।

ବସନ୍ତ ରୋଗର ଗୋଟିଏ ବିଶେଷତ୍ୱ ଏହି ଯେ, ଯେଉଁ ଲୋକ ଥରେ ଏହି ରୋଗରେ ପଡ଼ି ବଞ୍ଚିଯାଏ, ଜୀବନଯାକ ଆଉ ତାହାକୁ ଏହି ରୋଗ ଧରେ ନାହିଁ । ଅବଶ୍ୟ ପ୍ରଥମ ଆକ୍ରମଣର ଚିହ୍ନଗୁଡ଼ିକ ଦେହରେ ରହିଯାଏ । ତେଣୁ ଲୋକେ ବୁଝୁଁଥିଲେ ଯେ କିପରି ସେମାନଙ୍କ ଦେହରେ ସାମାନ୍ୟ ଭାବରେ ଥରେ ବସନ୍ତ ରୋଗ ହେଉ ।

ସୁସ୍ଥ ଲୋକର ଦେହରେ ବସନ୍ତ ରୋଗ କରାଇବା ପାଇଁ ସେ କାଳରେ ଲୋକେ ବସନ୍ତ ରୋଗୀର ପୂଜ ସଂଗ୍ରହ କରୁଥିଲେ । ସୁସ୍ଥ ଲୋକର ଦେହରେ ସାମାନ୍ୟ କ୍ଷତ କରି ସେଥିରେ ସେହି ପୂଜରୁ ଟିକିଏ ପ୍ରବେଶ କରାଇଦେଲେ ସେ ବସନ୍ତରୋଗରେ ଆକ୍ରାନ୍ତ ହେଉଥିଲା । ଏହିପରି ସୁସ୍ଥ ଶରୀରରେ ବସନ୍ତରୋଗର ବୀଜ ପ୍ରବେଶ କରାଇବାକୁ ବସନ୍ତ ଟିକା କହୁଥିଲେ । ଏହା ବିଶେଷ ଭାବରେ ଆଫ୍ରିକା ଓ ଭାରତବର୍ଷରେ ଚଳୁଥିଲା । ଏ ପ୍ରକାର ବସନ୍ତ-ଟିକା ନେବାଦ୍ୱାରା ଯେ ସବୁ ଲୋକ ରକ୍ଷା ପାଉଥିଲେ ତାହା ନୁହେଁ ; ଅନେକ ଲୋକ ଏହିପରି ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ହରାଉ-ଥିଲେ । କାରଣ ଅନେକ ସ୍ଥଳରେ ବସନ୍ତ ସାମାନ୍ୟ ନ ହୋଇ ଭୀଷଣ ଆକାର ଧାରଣ କରୁଥିଲା ।

୧୭୧୭ ଖ୍ରୀଷ୍ଟାବ୍ଦରେ ଜଣେ ଇଂରେଜ ମହିଳା ତୁର୍କି ଯାଇଥିଲେ । ସେ ଦେଖିଲେ ଯେ ସେଠାରେ ଏକ ପ୍ରକାର ବସନ୍ତ ଟିକାର ପ୍ରଚଳନ ଅଛି । ସେ ଟିକା ନେଲେ ଯେଉଁ ବସନ୍ତ ହେଉଥିଲା, ତାହା ମାରାତ୍ମକ ନୁହେଁ । ଏପରିକି ଟିକା ନେବା ଲୋକଙ୍କ ଭିତରୁ ଜଣକର ସୁଦ୍ଧା ମୃତ୍ୟୁ ହେଉ ନ ଥିଲା । ସେ ନିଜର ପୁଅକୁ ଏହି ଟିକା ଦିଆଇଥିଲେ ଏବଂ ପିଲାଟି ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ନ ଥିଲା ।

ଏହି ମହିଳାଙ୍କ କଥା ଶୁଣି ଇଂଲଣ୍ଡ ଓ ଫ୍ରାନସ ଦେଶରେ ବସନ୍ତ ଟିକାର ପରୀକ୍ଷା ହେଲା । ଅନେକେ ଏହି ଟିକାର ବିରୋଧ ମଧ୍ୟ କଲେ । ଦେଖାଗଲା ଯେ ଏହି ଟିକା ନେଇଥିବା ଲୋକଠାରେ ସାମାନ୍ୟ ବସନ୍ତ ହେଲେହେଁ ତାହାଠାରୁ ଡେଇଁ ରୋଗ ଅନ୍ୟମାନଙ୍କୁ ଆକ୍ରମଣ କଲା ଓ ସେଥିରେ ବହୁ ଲୋକ ମଲେ । ୧୮୦୨ ମସିହାର ହିସାବରୁ ଜଣାଗଲା ଯେ ଏହି ଟିକା ଫଳରେ ବସନ୍ତ ରୋଗରେ ଆଗରୁ ଯେତେ ଲୋକ ମରୁଥିଲେ, ତହିଁରୁ ଅଧିକ ଲୋକ ମରୁଛନ୍ତି । ବସନ୍ତ-ଟିକା ଦ୍ୱାରା ବସନ୍ତ ରୋଗରୁ ରକ୍ଷା ପାଇବା ଅସମ୍ଭବ ବୋଲି ଲୋକଙ୍କର ଧାରଣା ଦୃଢ଼ ହେଲା ।

କିନ୍ତୁ ଏଡ଼ୱାର୍ଡ ଜେନରଙ୍କ ଚେଷ୍ଟା ଫଳରେ ଏବେ ପୃଥିବୀରୁ ବସନ୍ତ ରୋଗ ବିଦାୟ ନେଇଛି କହିଲେ ଚଳେ । ସଭ୍ୟ ଦେଶମାନଙ୍କରେ ବସନ୍ତ ଦାଗ ଥିବା ମନୁଷ୍ୟ ଦେଖିବାକୁ ବିରଳ ।

ଜେନର ଇଂଲଣ୍ଡର ବର୍କଲି ସହରରେ ୧୭୪୯ ଖ୍ରୀଷ୍ଟାବ୍ଦର ମଇମାସ ୧୭ତାରିଖରେ ଜନ୍ମିଥିଲେ । ପିଲାଦିନେ ଜେନର୍ ସେକାଳର ପ୍ରଚଳିତ ପଦ୍ଧତିରେ ବସନ୍ତ-ଟିକା ନେଇଥିଲେ । ସୌଭାଗ୍ୟବଶତଃ ଟିକା ନେବା ଫଳରେ ତାଙ୍କୁ ଭୀଷଣ ବସନ୍ତ ହୋଇ ନ ଥିଲା ।

ପିଲାଦିନେ ସେ ପିତାଙ୍କୁ ହରାଇଥିଲେ ; କିନ୍ତୁ ବନ୍ଧୁବାନ୍ଧବ-ମାନେ ତାଙ୍କର ଯତ୍ନ ନେଇ ତାଙ୍କୁ ବିଦ୍ୟାଳୟକୁ ପଠାଇଲେ । ବିଦ୍ୟାଳୟ ଶିକ୍ଷାପରେ ସେ ଡାକ୍ତର ବିଦ୍ୟା ଶିଖିବାକୁ ମନ ବଳାଇଲେ ।

ସେ କାଳରେ ଇଂଲଣ୍ଡରେ ଆଜକାଲି ପରି ଡାକ୍ତର ଶିକ୍ଷା ପାଇଁ ସ୍କୁଲ କଲେଜ ନ ଥିଲା । କେହି ଡାକ୍ତର ହେବାକୁ ଇଚ୍ଛାକଲେ ସେ କୌଣସି ଡାକ୍ତରଙ୍କ ପାଖେ ରହି ତାଙ୍କଠାରୁ ଡାକ୍ତର ବିଦ୍ୟା ଶିଖୁଥିଲା ।

ଜେନର ଲଡ୍‌ଲୋ ବୋଲି ଜଣେ ଡାକ୍ତରଙ୍କ ଘରେ ରହି ଡାକ୍ତର ଶିଖିବାକୁ ଲାଗିଲେ । ସେତେବେଳକୁ ଜେନରଙ୍କ ବୟସ ୧୮।୧୯ ବର୍ଷ ।

ଦିନେ ଗୋଟିଏ ମଫସଲି ଝିଅ କୌଣସି ରୋଗ ବିଷୟରେ ଜେନରଙ୍କ ପାଖକୁ ପରାମର୍ଶ ପାଇଁ ଆସିଥିଲା । କଥା ପ୍ରସଙ୍ଗରେ ବସନ୍ତ ରୋଗ ବିଷୟ ପଡ଼ିଲା । ଝିଅଟି କହିଲା, "ମୋର ଗୋ-ବସନ୍ତ ହୋଇଥିଲା ; ମୋତେ ଆଉ ବସନ୍ତ ରୋଗ ଧରିବ ନାହିଁ ।"

ଗୋ-ବସନ୍ତ ଗୋରୁମାନଙ୍କର ଗୋଟିଏ ରୋଗ । ସମୟ ସମୟରେ ଏହା ଗୋରୁଙ୍କଠାରୁ ମନୁଷ୍ୟ ଦେହକୁ ଡିଏଁ । ମଣିଷର ଏହି ରୋଗରେ ବିଶେଷ କ୍ଷତି ହୁଏ ନାହିଁ ।

ଝିଅଟିର ଏ କଥା ଶୁଣି ଜେନର ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସତେ କଅଣ ଯାହାକୁ ଗୋ-ବସନ୍ତ ହୋଇଥିବ, ତାର ଆଉ ବସନ୍ତରୋଗ ହେବ ନାହିଁ !

ଲଣ୍ଡନରୁ ଫେରିଯାଇ ଜେନର ବର୍କଲି ସହରରେ ଡାକ୍ତରି ବ୍ୟବସାୟ କଲେ । ସେ ସେହି ଗାଉଁଲି ଝିଅଟିର କଥା ଭୁଲିଯାଇ

ନ ଥିଲେ । ଅନ୍ୟ ଅନେକ ଲୋକଙ୍କଠାରୁ ମଧ୍ୟ ସେ ଶୁଣିଲେ ଯେ ଗୋ-ବସନ୍ତ ହୋଇଥିଲେ ବସନ୍ତ ରୋଗ ହୁଏ ନାହିଁ । ଜେନର ଏହି କଥାର ସତ୍ୟାସତ୍ୟ ପରୀକ୍ଷା କରିବାକୁ ସ୍ଥିର କଲେ ।

ଜେନର ଦେଖିଲେ ଯେ ଯେଉଁମାନଙ୍କର ଗୋ-ବସନ୍ତ ହୋଇଥାଏ ସେମାନଙ୍କୁ ପ୍ରଚଳିତ ବସନ୍ତ ଟିକା ଦେଲେ ବସନ୍ତ ହୁଏ ନାହିଁ । ତହୁଁ ସେ ଭାବିଲେ, ବୋଧହୁଏ ବସନ୍ତ-ଟିକା ପରିବର୍ତ୍ତରେ ଗୋ-ବସନ୍ତ ଟିକା ଦେଲେ ବସନ୍ତ ରୋଗ ହେବ ନାହିଁ ।

ସେ ଅନ୍ୟ ଡାକ୍ତରମାନଙ୍କୁ ଏହି କଥା କହିଲେ । ସେମାନେ ଜେନରଙ୍କ କଥାକୁ ହସରେ ଉଡ଼ାଇ ଦେଲେ । ଜେନର ଲଣ୍ଡନକୁ ଯାଇ ସେହି କଥା କହିଲେ ; ମାତ୍ର କେହି ତାଙ୍କ କଥା ଶୁଣିଲେ ନାହିଁ, ବରଂ ଉପହାସ କଲେ ।

ଏତେଦିନ ଯାଏ ଜେନରଙ୍କର ଖାଲି ଧାରଣା ଥିଲା ଯେ ଗୋ-ବସନ୍ତ ଟିକା ଦେଲେ ବସନ୍ତ ହେବ ନାହିଁ ; କିନ୍ତୁ ସେ କାହାରିଠାରେ ଏହାର ପରୀକ୍ଷା କରି ନ ଥିଲେ । ଏବେ ସେ ଏହାର ପରୀକ୍ଷା କରିବାକୁ ସ୍ଥିର କଲେ ।

୧୭୯୬ ଖ୍ରୀଷ୍ଟାବ୍ଦରେ ଥରେ ସେ ଜଣେ ସ୍ତ୍ରୀଲୋକକୁ ଦେଖିଲେ । ସେହି ସ୍ତ୍ରୀଲୋକଟି ଗୋ-ବସନ୍ତ ରୋଗରେ ଆକ୍ରାନ୍ତ ହୋଇଥିଲା । ଜେନର ତାହା ଦେହରୁ ସେହି ଗୋ-ବସନ୍ତ ରୋଗର ପୂଜ ନେଇ ଗୋଟିଏ ପିଲାର ହାତରେ ଟିକା ଦେଲେ । ଟିକା ଦିଆ ଯାଇଥିବା ସ୍ଥାନ ପାଚି ଫୁଲିଲା । ପୂଜ ଶୁଖି ଗିବା ପରେ ସେଠାରେ ବସନ୍ତ ଚିହ୍ନ ପରି ଗୋଟିଏ ଦାଗ ରହିଗଲା । କିଛିଦିନ ପରେ ଜେନର ସେହି ପିଲାଠାରେ ପୁଣି ବସନ୍ତ ଟିକା ଦେଲେ । କିନ୍ତୁ ପିଲାଟିକୁ ବସନ୍ତ ଆଦୌ ଆକ୍ରମଣ କଲା ନାହିଁ ।

ଏହି ପରୀକ୍ଷା ପରେ ଜେନରଙ୍କ ମନରେ ଗଭୀର ଆନନ୍ଦ ଜାତ ହେଲା । ବସନ୍ତ ପରି ଏକ ମାରାତ୍ମକ ରୋଗ ହାତରୁ ମୁକ୍ତିର ଉପାୟ ମିଳିଲା । ମାତ୍ର ଲୋକେ ସହଜରେ ଜେନରଙ୍କ କଥାରେ ବିଶ୍ୱାସ କଲେ ନାହିଁ । ତାଙ୍କ ବନ୍ଧୁମାନେ ତାଙ୍କୁ ପରାମର୍ଶ ଦେଲେ—ତୁମେ ଜଣେ ଭଲ ଡାକ୍ତର ବୋଲି ନାଁ ଅର୍ଜିଛ । ଗୋ-ବସନ୍ତ ଟିକା ଦେଲେ ବସନ୍ତ ରୋଗ ହେବ ନାହିଁ କହି ବୁଲିଲେ ଲୋକେ ତୁମକୁ ପାଗଳ ବୋଲି ମନେ କରିବେ ।

ଅନେକ ଲୋକ ମଧ୍ୟ ଜେନରଙ୍କର ବିରୋଧୀ ହୋଇ ପଡ଼ିଲେ । କେହି କେହି କହିଲେ ଯେ ଗୋ-ବସନ୍ତ ଟିକା ନେଲେ ଦେହରେ ସବୁ ରୋଗ ପ୍ରବେଶ କରିବ । ଆଉ ଜଣେ କହିଲେ ଯେ ଗୋ-ବସନ୍ତ ଟିକା ନେଇଥିବା ଗୋଟିଏ ପିଲାର ମୁଣ୍ଡ ଗୋରୁ ମୁଣ୍ଡପରି ହୋଇ ଯିବାର ସେ ନିଜେ ଦେଖିଛନ୍ତି ।

ତଥାପି ଜେନର ଦବିଗଲେ ନାହିଁ । ସେ ଏହି ନୂତନ ଗୋ-ବସନ୍ତ ଟିକା ବିଷୟରେ ଖଣ୍ଡିଏ ବହି ଲେଖି ତାର ପ୍ରଚାର କଲେ ।

ଜେନର ଗୋ-ବସନ୍ତରେ ଆକ୍ରାନ୍ତ ହୋଇଥିବା ଗୋରୁର ପୂଜ ନେଇ ମନୁଷ୍ୟ ଦେହରେ ଟିକା ଦେଉଥିଲେ । ତେଣୁ ଏହି ଟିକା ଗୋ-ବୀଜ ଟିକା ନାମରେ ପରିଚିତ । ସେ ଏହି ଟିକା ଦେବାପାଇଁ ବହୁତ ପ୍ରଚାରିଉଥିଲେ, କିନ୍ତୁ ଅତି ଅଳ୍ପ ଲୋକ ଏହି ଟିକା ନେବାକୁ ରାଜି ହେଉଥିଲେ ।

ସତ୍ୟ ଘଟଣା କେତେ ଦିନ ଲୁଚି ରହିବ ? କିଛିକାଳ ମଧ୍ୟରେ ଜଣାଗଲା ଯେ ଗୋ-ବୀଜ ଟିକା ନେଇଥିବା ଲୋକଙ୍କୁ ବସନ୍ତ ରୋଗ ଧରୁ ନାହିଁ । କ୍ରମେ ଗୋ-ବୀଜ ଟିକା ନେବାପାଇଁ ଲୋକଙ୍କର ଆଗ୍ରହ ହେଲା । ଲଣ୍ଡନର କେତେଜଣ ଡାକ୍ତର ଗୋ-ବୀଜ ଟିକା ଦେବାକୁ ଲାଗିଲେ । କ୍ରମେ ଗୋ-ବୀଜ ଟିକା ଦେବାର ପ୍ରଥା ଇଂଲଣ୍ଡରୁ

ଅନ୍ୟାନ୍ୟ ଦେଶକୁ ଗଲା । ସ୍ପେନରେ ଏହାର ଖୁବ୍ ପ୍ରଚଳନ ହେଲା । ଆମେରିକାର ପ୍ରେସିଡେଣ୍ଟ ଜେଫରସନ ନିଜେ ଗୋ-ବୀଜ ଟିକା ନେଲେ । ରୁଷିଆର ଲୋକେ ଗୋ-ବୀଜ ଟିକାର ଉପକାର ଦେଖି ଜେନରଙ୍କୁ ଗୋଟିଏ ମୁଦ୍ରି ଉପହାର ଦେଇଥିଲେ । ଜର୍ମାନୀର ଲୋକେ ଗୋ-ବୀଜ ଟିକାର ଆଦର କଲେ ଏବଂ ଜେନରଙ୍କୁ ପୁରସ୍କାର ଦେଲେ । ଯେଉଁ ଇଂଲଣ୍ଡରେ ଜେନରଙ୍କ ଗୋ-ବୀଜ ଟିକାକୁ ଲୋକେ ହସରେ ଉଡ଼ାଇ ଦେଇଥିଲେ ସେହି ଇଂଲଣ୍ଡ ଜେନରଙ୍କୁ ପ୍ରାୟ ଚାରିଲକ୍ଷ ଟଙ୍କା ପୁରସ୍କାର ଦେଇଥିଲା ।

ଏତେ ପୁରସ୍କାର ଓ ସମ୍ମାନ ପାଇଲେହେଁ ଜେନର ବଡ଼ ବିନୟୀ ଥିଲେ । ଲୋକଙ୍କର ଉପକାରରେ ଜୀବନ କଟାଇ ସେ ୭୪ ବର୍ଷ ବୟସରେ ୧୮୨୩ ମସିହା ଜାନୁୟାରୀ ମାସ ୨୬ ତାରିଖ ଦିନ ପ୍ରାଣତ୍ୟାଗ କଲେ ।

ରୋଗର ପ୍ରତିଷେଧ ପାଇଁ ବାସ୍ତବରେ ଜେନର ଗୋଟିଏ ନୂଆ ବାଟ ଫିଟାଇ ଦେଇ ଯାଇ ଅଛନ୍ତି । ଆଜି କାଲି ଆମେ ଯେ ବସନ୍ତରୁ ରକ୍ଷା ପାଇବାପାଇଁ ଖାଲି ଗୋ-ବୀଜ ଟିକା ନେଉଛୁ ତା ନୁହେ ; ହଇଜା, ଟାଇଫଏଡ଼ ପ୍ରଭୃତିର ପ୍ରତିଷେଧକ ରୂପେ ବିଭିନ୍ନ ପ୍ରକାର ଟିକା ନେଉଛୁ । ନୂଆ ନୂଆ ଆବିଷ୍କାର ଦିଗରେ ଜେନର ଜଣେ ପଥପ୍ରଦର୍ଶକ ।

ଲକ୍ଷ ଲକ୍ଷ, କୋଟି କୋଟି ଲୋକଙ୍କୁ ଭୀଷଣ ବସନ୍ତ ରୋଗରୁ ରକ୍ଷା କରି ଜେନର ଆଜି ସମସ୍ତ ଜଗତର ଧନ୍ୟବାଦର ପାତ୍ର ।

ରୋଗ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଯେଉଁମାନେ ବିଜୟୀ ହୋଇ ଅଛନ୍ତି ସେମାନଙ୍କ ମଧ୍ୟରେ ଜେନରଙ୍କ ନାମ ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବ ।

———

# ସାମୁଏଲ୍ ହାନିମାନ

ମନୁଷ୍ୟ ଅତି ପ୍ରାଚୀନ କାଳରୁ ରୋଗ ଯନ୍ତ୍ରଣାରୁ ମୁକ୍ତି ପାଇ ଶରୀରକୁ ସୁସ୍ଥ ଓ କାର୍ଯ୍ୟକ୍ଷମ ରଖିବା ନିମନ୍ତେ ଚେଷ୍ଟା କରି ଆସୁଅଛି । ଏହି ଚେଷ୍ଟା ଫଳରେ ଜଗତରେ କେତେଗୁଡ଼ିଏ ବିଭିନ୍ନ ଚିକିତ୍ସାପ୍ରଣାଳୀର ଉଦ୍ଭାବନ ହୋଇଅଛି । ଭାରତର ପ୍ରାଚୀନ ମହର୍ଷିମାନେ ବ୍ୟାଧିହସ୍ତରୁ ମାନବଜାତିକୁ ରକ୍ଷା କରିବା ନିମନ୍ତେ ଆୟୁର୍ବେଦୀୟ ଚିକିତ୍ସାପ୍ରଣାଳୀର ପ୍ରବର୍ତ୍ତନ କରିଥିଲେ । ଆଜି କାଲି ପୃଥିବୀର ଅଧିକାଂଶ ଦେଶରେ ଏଲୋପାଥିକ୍ ଚିକିତ୍ସାପ୍ରଣାଳୀ ଅନୁସୃତ ହୁଏ । ୟୁନାନୀ ଚିକିତ୍ସାପ୍ରଣାଳୀ ମଧ୍ୟ କେତେକ ସ୍ଥଳରେ ପ୍ରଚଳିତ ହୋଇଅଛି । ମାତ୍ର ହୋମିଓପାଥିକ୍ ଚିକିତ୍ସାପଦ୍ଧତି ଏ ସବୁଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏହି ଚିକିତ୍ସାପଦ୍ଧତି ଉଦ୍ଭାବନ କରି ମହାତ୍ମା ହାନିମାନ୍ ରୋଗକ୍ଳିଷ୍ଟ ମାନବଜାତିର ଅଶେଷ କଲ୍ୟାଣ ସାଧନ କରି ଯାଇଅଛନ୍ତି ।

ଏହି ମହାପୁରୁଷ ଖ୍ରୀଷ୍ଟୀୟ ୧୭୫୫ ଅବ୍ଦରେ ଜର୍ମାନୀ-ଅନ୍ତର୍ଗତ ମିସେନ୍ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଖ୍ରୀଷ୍ଟିୟାନ୍ ଗଡ୍‌ଫ୍ରେ ହାନିମାନ୍ ଚିତ୍ରକର କାର୍ଯ୍ୟ କରି ସାମାନ୍ୟ ଆୟଦ୍ୱାରା କୁଟୁମ୍ବ ପ୍ରତିପୋଷଣ କରୁଥିଲେ । ବାଲ୍ୟକାଳରେ ସାମୁଏଲ୍ ହାନିମାନ ପିତାଙ୍କ ନିକଟରେ ଶିକ୍ଷା ଲାଭ କରିଥିଲେ । ପିତାଙ୍କର ଗୋଟିଏ ପ୍ରଧାନ ଉପଦେଶ ଥିଲା ଯେ, ଶରୀରକୁ ସୁସ୍ଥ ଓ



[ସାମୁଏଲ ହାନିମାନ]

କାର୍ଯ୍ୟକ୍ଷମ ଅବସ୍ଥାରେ ନ ରଖିଲେ ମନ ମଧ୍ୟ କାର୍ଯ୍ୟକ୍ଷମ ଓ ସୁସ୍ଥ ରହେ ନାହିଁ । ତେଣୁ ଜୀବନରେ ସୁଖ ବା ଉନ୍ନତି ଲାଭ କରିବା ଅସମ୍ଭବ ହୋଇପଡ଼େ । ସାମୁଏଲ ଏହି ଉପଦେଶ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ଏବଂ ଫଳତଃ ସେ ବେଶ୍ ସୁସ୍ଥ ଓ ସବଳ ଥିଲେ ।

ବାଲ୍ୟକାଳରେ ସାମୁଏଲ ସ୍ଥାନୀୟ ଦୁଇଟି ବିଦ୍ୟାଳୟରେ କିଛିକାଳ ବିଦ୍ୟା ଶିକ୍ଷା କରି ଲିପ୍‌ଜିଗ୍ ସହରକୁ ଗମନ କଲେ । ବାଲ୍ୟକାଳରୁ ତାଙ୍କର ତୀକ୍ଷ୍ଣ ମେଧା ଓ ସ୍ମୃତିଶକ୍ତିର ପରିଚୟ ମିଳିଥିଲା । ନିଜ ଗୁଣରେ ସେ ତତ୍‌ରତ୍ୟ ଶିକ୍ଷକ-ମାନଙ୍କର ସ୍ନେହ ଓ ଶ୍ରଦ୍ଧା ଆକର୍ଷଣ କରିପାରିଥିଲେ । କ୍ରମେ ସେ ବିଭିନ୍ନ ଭାଷା ଓ ଶାସ୍ତ୍ରଶିକ୍ଷାରେ ପାରଦର୍ଶିତା ଲାଭକଲେ । ଲିପ୍‌ଜିଗ୍ ସହରରେ ଦୁଇ ବର୍ଷକାଳ ଚିକିତ୍ସାବିଦ୍ୟା ଅଧ୍ୟୟନ କରି ହାନିମାନ୍ ଅଷ୍ଟ୍ରିୟାର ରାଜଧାନୀ ଭିଏନାକୁ ଗମନକଲେ ଏବଂ ସେଠାରେ ମଧ୍ୟ କିଛି କାଳ ଚିକିତ୍ସାଶାସ୍ତ୍ରର ଅନୁଶୀଳନ କଲେ । ଅଷ୍ଟ୍ରିୟାର ପ୍ରସିଦ୍ଧ ରାଜଚିକିତ୍ସକ ଭନ୍‌କୋଆରିନ୍ ହାନିମାନଙ୍କୁ ଅତିଶୟ ସ୍ନେହ କରୁଥିଲେ ଏବଂ ଅନେକ ସମୟରେ ରୋଗୀ ଦେଖିବାକୁ ତାଙ୍କୁ ସଙ୍ଗରେ ନେଉଥିଲେ । ଏହି ରାଜଚିକିତ୍ସକଙ୍କ ଅନୁଗ୍ରହରୁ ହାନିମାନ୍ ସରକାରୀ ଦାତବ୍ୟ ଚିକିତ୍ସାଳୟରେ କାର୍ଯ୍ୟ ଶିକ୍ଷା କରିବାର ଅନୁମତି ପାଇଲେ । ଏହା ଫଳରେ ତାଙ୍କର ଚିକିତ୍ସାଶାସ୍ତ୍ରରେ ବିଶେଷ ଅଭିଜ୍ଞତା ଜନ୍ମିଲା ।

ଏହାପରେ ହାନିମାନ୍ ଟ୍ରାନ୍‌ସେଲଭିନଆର ଶାସନକର୍ତ୍ତାଙ୍କ ଗୃହଚିକିତ୍ସକ ଓ ପାଠାଗାରର ତତ୍ତ୍ୱାବଧାରକ ପଦରେ ନିଯୁକ୍ତ ହେଲେ । ଏହି ପଦଲାଭ କରିବା ଦ୍ୱାରା ତାଙ୍କର ଆର୍ଥିକ ଅଭାବ ଦୂରୀଭୂତ ହେଲା ଏବଂ ସେ ଗୋଟିଏ ବୃହତ ପାଠାଗାରର

ସ୍କୁଲକରୂପେ ବହୁ ଚିକିତ୍ସାଶାସ୍ତ୍ର ଅଧ୍ୟୟନ କରି ଲାଟିନ୍, ଫ୍ରେଞ୍ଚ୍, ଗ୍ରୀକ୍ ପ୍ରଭୃତି ଭାଷା ଶିକ୍ଷା କରିବାର ସୁବିଧା ପାଇଲେ । ଦୁଇବର୍ଷ ସୁଚାରୁରୂପେ ସେ ନିଜର କର୍ତ୍ତବ୍ୟ ସମ୍ପାଦନ କରି ଉପାଧି ପରୀକ୍ଷା ଦେବା ନିମନ୍ତେ ଅନ୍ୟତ୍ର ପ୍ରସ୍ଥାନ କଲେ ଏବଂ ୧୭୭୯ ଖ୍ରୀଷ୍ଟାବ୍ଦରେ ଏମ୍. ଡି, ଉପାଧି ଲାଭକଲେ ।

ଉପାଧି ଲାଭକଲା ପରେ ହାନିମାନ୍‌ଙ୍କ ଜ୍ଞାନଲିପ୍ସା ହ୍ରାସ ନ ପାଇ ବରଂ ବୃଦ୍ଧି ଲାଭ କଲା । ସେ ଚିକିତ୍ସା କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ରସାୟନବିଦ୍ୟା, ଉଦ୍ଭିଦବିଦ୍ୟା ଓ ଖଣିଜବିଦ୍ୟା ବିଷୟରେ ଅନେକ ଗ୍ରନ୍ଥ ଅଧ୍ୟୟନ କଲେ । ବାଲ୍ୟ କାଳରୁ ତାଙ୍କର ଜ୍ଞାନପିପାସା ଅତ୍ୟନ୍ତ ବଳବତୀ ଥିଲା । କୌଣସି ବିଷୟ ଦେଖିଲେ ତାହାର କାରଣ ଅନୁସନ୍ଧାନ କରିବା ତାଙ୍କର ପ୍ରକୃତି ଥିଲା । ସେ ଯେ କୌଣସି ଲୋକଠାରୁ ନୂତନ ଜ୍ଞାନ ଲାଭ କରିବାକୁ ସର୍ବଦା ବ୍ୟାକୁଳ ଥିଲେ ।

ହାନିମାନ୍ ୧୭୮୨ ଖ୍ରୀଷ୍ଟାବ୍ଦରେ ଗଣ୍ଡମାଳା ରୋଗର ଚିକିତ୍ସା ବିଷୟରେ ଖଣ୍ଡିଏ ପୁସ୍ତକ ପ୍ରଣୟନ କଲେ । ତାଙ୍କର ଧାରଣା ଥିଲା ଯେ, କୌଣସି ରୋଗ ହେଲା ମାତ୍ରେ ଔଷଧ ବା ଡାକ୍ତରଙ୍କର ସାହାଯ୍ୟ ନ ନେଇ ମୁକ୍ତବାୟୁ ସେବନ, ବାୟୁ ପରିବର୍ତ୍ତନ ପ୍ରଭୃତି ପ୍ରାକୃତିକ ଉପାୟ ଅବଲମ୍ବନ କଲେ ଉକ୍ତ ରୋଗ ଆପେ ଆପେ ଦୂର ହୋଇ ଯାଇପାରେ । ଏପରି ସ୍ଥଳରେ ପ୍ରକୃତି ଚିକିତ୍ସକର କାର୍ଯ୍ୟ କରିଥାଏ । ତେଣୁ ପ୍ରଚଳିତ ଏଲୋପାଥିକ୍ ପ୍ରଣାଳୀରେ କେତେକ କାଳ ଚିକିତ୍ସା କରିବା ପରେ ତାଙ୍କ ମନରେ ଗୋଟିଏ ବିଷମ ସନ୍ଦେହ ଉପସ୍ଥିତ ହେଲା ଯେ ବିଭିନ୍ନ ପଦାର୍ଥର ସମ୍ମିଶ୍ରଣରେ ପ୍ରସ୍ତୁତ ଔଷଧର ଗୁଣ ଉତ୍ତମରୂପେ ନ ଜାଣି ରୋଗୀଠାରେ ତାହା ପ୍ରୟୋଗ କରିବା ଦ୍ୱାରା ପ୍ରକୃତରେ ଆରୋଗ୍ୟ ସାଧନ ହୁଏ କି ?

ହାନିମାନ୍ ଏହିପରି ଏହି ଚିନ୍ତାରେ ବ୍ୟାକୁଳ ହୋଇ ପଡ଼ିଲେ ଏବଂ କୌଣସି ପନ୍ଥା ନ ପାଇ ନିଜର ଆୟୁରେ ଜଳାଞ୍ଜଳି ଦେଇ ଚିକିତ୍ସା ବ୍ୟବସାୟ ତ୍ୟାଗ କଲେ । ଉଦରପୋଷଣ ନିମନ୍ତେ ସେ ବିଭିନ୍ନ ପୁସ୍ତକର ଅନୁବାଦ କରିବାକୁ ଲାଗିଲେ । ଡାକ୍ତର କାଲେନ୍‌ଙ୍କର ମେଟେରିଆ ମେଡ଼ିକା ବା ଭେଷଜତତ୍ତ୍ୱର ଅନୁବାଦ କରୁଥିବା ସମୟରେ ସୁସ୍ଥ ଶରୀରରେ କୁଇନାଇନ୍ ସେବନ କଲେ କି କ୍ରିୟା ହୁଏ ତାହା ପରୀକ୍ଷା କରିବା ପାଇଁ ସେ ନିଜେ କିଛି କୁଇନାଇନ୍ ଖାଇଲେ ଏବଂ ତଦ୍ଦ୍ୱାରା ଯେଉଁ ସବୁ ଲକ୍ଷଣ ପ୍ରକାଶ ପାଇଲା, ତାହା ଲକ୍ଷ୍ୟ କଲେ । ଦେଖାଗଲା ଯେ ସୁସ୍ଥ ଶରୀରରେ କୁଇନାଇନ୍ ସେବନ କଲେ କମ୍ପ ଜ୍ୱରର ସମସ୍ତ ଲକ୍ଷଣ ପ୍ରକାଶ ପାଏ । ସେ ଅନୁମାନ କଲେ ଯେ କୁଇନାଇନ୍ ସେବନଦ୍ୱାରା ଯେଉଁ ସବୁ ଲକ୍ଷଣ ପ୍ରକାଶ ପାଏ, ସେହି ଲକ୍ଷଣଯୁକ୍ତ ଜ୍ୱରରେ କୁଇନାଇନ୍ ସେବନକଲେ ରୋଗ ଆରୋଗ୍ୟ ହେବ । ଅନ୍ୟ ଔଷଧ ସମ୍ବନ୍ଧରେ ଏ ନିୟମ ପ୍ରଯୁଜ୍ୟ କି ନା, ଜାଣିବା ଉଦ୍ଦେଶ୍ୟରେ ସେ ସୁସ୍ଥ ଶରୀରରେ ଆକୋନାଇଟ୍, ବେଲାଡ଼ୋନା ପ୍ରଭୃତି ଔଷଧ ପ୍ରୟୋଗ କରି ପ୍ରତ୍ୟେକର ଫଳ ବିଶେଷ ଭାବରେ ଲକ୍ଷ୍ୟକଲେ । ଶେଷରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ସୁସ୍ଥ ଶରୀରରେ କୌଣସି ଔଷଧ ସେବନ କଲେ ଯେଉଁ ଯେଉଁ ଲକ୍ଷଣ ପ୍ରକାଶ ପାଏ, ସେହି ସେହି ଲକ୍ଷଣଯୁକ୍ତ ବ୍ୟାଧିରେ ଉକ୍ତ ଔଷଧ ପ୍ରୟୋଗ କଲେ ରୋଗ ଦୂରୀଭୂତ ହେବ । ଏହାହିଁ ତାଙ୍କର ହୋମିଓପାଥିକ ଚିକିତ୍ସାର ମୂଳଭିତ୍ତି ।

ଏଥିପୂର୍ବରୁ ବିଶ୍ୱାସ ଥିଲା ଯେ, ଶରୀରରେ ଯେଉଁ ରୋଗ-ଲକ୍ଷଣ ପ୍ରକାଶ ପାଉଛି, ତାର ବିପରୀତ ଗୁଣକାରକ ଔଷଧ

ପ୍ରୟୋଗ କରାଯିବା ବିଧେୟ । ମାତ୍ର ହାନିମାନ୍ ପ୍ରମାଣ କଲେ ଯେ "ସମେ ସମଂ"—ଆମେ ମଧ୍ୟ କହୁଁ "ବିଷସ୍ୟ ବିଷମୌଷଧଂ ।" ଏହି ପ୍ରଣାଳୀରେ କେତେକ ରୋଗୀଙ୍କୁ ଚିକିତ୍ସା କରି ସେ ଆଶ୍ଚର୍ଯ୍ୟଜନକ ଫଳ ପାଇଲେ । ଏ ବିଷୟରେ ସେ ଯେତିକ ଆଲୋଚନା କଲେ ଓ ଯେତେ ପରୀକ୍ଷା କଲେ, ତାଙ୍କର ମତ ସେତିକ ବଦ୍ଧମୂଳ ହେଲା । ସେ ମନେ କଲେ ଯେ ଏହି ପ୍ରକାର ଚିକିତ୍ସାହିଁ ପ୍ରକୃତ ବିଜ୍ଞାନସମ୍ମତ ଚିକିତ୍ସା । ତେଣୁ ସେ ଏଲୋପାଥିକ୍ ପ୍ରଭୃତି ଅନ୍ୟ ଚିକିତ୍ସା ପଦ୍ଧତିର ତୀବ୍ର ପ୍ରତିବାଦ କରିବାକୁ ଲାଗିଲେ ।

ହାନିମାନ୍‌ଙ୍କ ନୂତନ ମତ ସହଜରେ ଲୋକସମାଜରେ ଆଦୃତ ହୋଇ ନ ଥିଲା । ଅନେକ ଲୋକ, ବିଶେଷତଃ ଏଲୋପାଥିକ୍ ଚିକିତ୍ସକମାନେ ତାଙ୍କର ଘୋର ବିରୋଧୀ ଥିଲେ । ମାତ୍ର ଶେଷରେ ତାଙ୍କ ପ୍ରବର୍ତ୍ତିତ ଚିକିତ୍ସାପ୍ରଣାଳୀ ଜଗତରେ ସୁପ୍ରତିଷ୍ଠିତ ହେଲା ।

ହାନିମାନ୍ ଅନେକଗୁଡ଼ିଏ ଚିକିତ୍ସାଗ୍ରନ୍ଥ ପ୍ରଣୟନ କରି ଯାଇଅଛନ୍ତି । ତାଙ୍କର ଚିକିତ୍ସାପଦ୍ଧତି ଆଜି ଜଗତରେ ସବୁ ଦେଶରେ ଆଦର ଲାଭ କରିଅଛି ।

ଅଠାଅଶୀ ବର୍ଷ ବୟସରେ ୧୮୪୩ ଖ୍ରୀଷ୍ଟାବ୍ଦରେ ହାନିମାନଙ୍କ ଆତ୍ମା ଅମର ଧାମକୁ ପ୍ରୟାଣ କଲା ।



# ଭିଷଗାଚାର୍ଯ୍ୟ ପାସ୍ତୁର

ଯୁଗ ଯୁଗ ଧରି ମହାପୁରୁଷମାନେ ନିଜ ନିଜର ସାଧନା ଦ୍ୱାରା ଜନସମାଜକୁ ଉପକୃତ କରୁଅଛନ୍ତି । ଯାହା ପୂର୍ବରୁ ରହସ୍ୟ-ଜନକ ମନେ ହେଉଥାଏ, ସେହି ରହସ୍ୟର କାରଣ ନିର୍ଦ୍ଦେଶ କରି ମନୀଷିଗଣ ଅଶେଷ କଲ୍ୟାଣ ସାଧନ କରନ୍ତି । ବିଜ୍ଞାନ ରାଜ୍ୟରେ ଅପୂର୍ବ ରହସ୍ୟ ଉଦ୍‌ଘାଟନ କରି ଲୁଇ ପାସ୍ତୁର ଏହିପରି ଯଶସ୍ୱୀ ହୋଇଅଛନ୍ତି ।



୧୮୨୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୭ ତାରିଖରେ ଫ୍ରାନ୍‌ସର ଆରବୋସ୍ ନାମକ ସହରରେ ଲୁଇ-ପାସ୍ତୁର ଜନ୍ମଗ୍ରହଣ କରି-ଥିଲେ । ଲୁଇପାସ୍ତୁରଙ୍କ ପିତା ଅତ୍ୟନ୍ତ ଦରିଦ୍ର ଥିଲେହେଁ ସେ ତାଙ୍କର ପୁତ୍ରକୁ ଉଚ୍ଚ ଶିକ୍ଷା ଦେବାକୁ କୁଣ୍ଠିତ ହୋଇ ନ ଥିଲେ । ବାଲ୍ୟକାଳରେ ଲୁଇପାସ୍ତୁର ବଡ଼ ଅମନୋଯୋଗୀ ଥିଲେ । ମାତ୍ର କାଳକ୍ରମେ ତାଙ୍କର ଏ ସ୍ୱଭାବରେ ପରିବର୍ତ୍ତନ ଦେଖାଗଲା । ସେ ବିଜ୍ଞାନର ରହସ୍ୟ ଉଦ୍‌ଘାଟନ କରିବାପାଇଁ କ୍ରମଶଃ ଅଧିକ ଆଗ୍ରହଶୀଳ ହେଲେ । ଏହି ସମୟରେ ସ୍ଫଟିକ ସମ୍ବନ୍ଧରେ ଗବେଷଣା କରି ସେ ତାଙ୍କର ଅଧ୍ୟାପକମାନଙ୍କର ଦୃଷ୍ଟି ଆକର୍ଷଣ

କରିଥିଲେ । ଏହି ଘଟଣା ପରଠାରୁ ତାଙ୍କର ଖ୍ୟାତି ଦେଶରେ ବ୍ୟାପ୍ତ ହୋଇ ପଡ଼ିଲା ।

୧୮୪୮ ଖ୍ରୀଷ୍ଟାବ୍ଦରେ ବିଭିନ୍ନ ଅନୁଷ୍ଠାନରେ ଅଧ୍ୟାପକ ହେବାପାଇଁ ତାଙ୍କୁ ଆହ୍ୱାନ ଆସିଲା । ୧୮୪୯ ସାଲରେ ସେ ଷ୍ଟ୍ରାର୍ସବର୍ଗ ସହରରେ ରସାୟନିକ ବିଭାଗରେ ଅଧ୍ୟାପନାର ଦାୟିତ୍ୱ ଗ୍ରହଣ କଲେ । ଏହିଠାରେ ଅବସ୍ଥାନ କାଳରେ ଅଟେଣ୍ଟ ନାମକ ଜଣେ ଅଧ୍ୟାପକଙ୍କ କନ୍ୟାଙ୍କୁ ସେ ବିବାହ କରିଥିଲେ ।

ଲୁଇପାସ୍ଟୁର ବିଭିନ୍ନ ସ୍ଥାନରେ ଅଧ୍ୟାପନା କରି ସୁଖ୍ୟାତି ଅର୍ଜନ କଲେ । ଉତ୍ତର ଫ୍ରାନ୍‌ସର ଲିଲେ ସହରରେ ଲୁଇପାସ୍ଟୁର ଅଧ୍ୟାପନା କରୁଥିବା କାଳରେ ମଦ୍ୟ ଉପରେ ଗବେଷଣା କରୁଥିଲେ । ହଠାତ୍ ସେ ଏକ ନୂତନ ତଥ୍ୟ ଆବିଷ୍କାର କରି ଚହଳ ପକାଇ ଦେଇଥିଲେ ।

ତାଙ୍କ ପୂର୍ବରୁ ସାଧାରଣତଃ ଧାରଣା ଥିଲା ଯେ ଜୀବାଣୁମାନେ ସ୍ୱତଃ ଜନ୍ମ ହୋଇଥାଆନ୍ତି । ମାତ୍ର ଲୁଇପାସ୍ଟୁର ପ୍ରମାଣ କରିଦେଲେ ଯେ ବାୟୁମଣ୍ଡଳର କୀଟାଣୁମାନଙ୍କ ଦ୍ୱାରା ଜୀବାଣୁମାନଙ୍କର ଜନ୍ମ ହୋଇଥାଏ । ସେହିପରି ମଦ୍ୟ ସେହି ଜୀବାଣୁମାନଙ୍କ ସଂସ୍ପର୍ଶରେ ଆସିଲେ ନଷ୍ଟ ହୋଇଯାଏ ବୋଲି ସେ ପ୍ରମାଣ କଲେ ।

ପ୍ରଥମେ ପ୍ରଥମେ ଲୋକେ ତାହାଙ୍କୁ ବିଶ୍ୱାସ କଲେ ନାହିଁ । ଲୋକଙ୍କ ମଧ୍ୟରେ ନାନା ଅନ୍ଧବିଶ୍ୱାସ କାର୍ଯ୍ୟ କରୁଥାଏ । ତାହା ହଠାତ୍ ଦୂରୀଭୂତ ହେବା ସହଜ ନୁହେ । ସେଥିପାଇଁ ଲୁଇପାସ୍ଟୁର ନାନା ବିଦ୍ରୂପ ଓ ସମାଲୋଚନାର ସମ୍ମୁଖୀନ ହୋଇଥିଲେ । ତଥାପି ସେ ନିଜ ସିଦ୍ଧାନ୍ତରେ ଅଟଳ ରହିଥିଲେ ।

ତାଙ୍କର ଗବେଷଣାରେ ମୁଗ୍ଧ ହୋଇ ସେତେବେଳର ଫରାସୀ ସରକାର ତାଙ୍କୁ ରେଶମ ପୋକ ସଂପର୍କରେ ଗବେଷଣା କରିବାପାଇଁ ନିଯୁକ୍ତ କଲେ । ଏହି ସମୟରେ ପକ୍ଷାଘାତ ରୋଗରେ ତାଙ୍କ ଶରୀରର ଏକ ଅଂଶ ଅଚଳ ହୋଇ ପଡ଼ିଥିଲା । ତଥାପି ସେ ନିଜର ଗବେଷଣାରୁ ବିରତ ହୋଇ ନ ଥିଲେ । ସେ ଦିନକୁ ଦିନ ନୂଆ ନୂଆ ତଥ୍ୟ ଆବିଷ୍କାର କରି ସୁନାମ ଅର୍ଜନ କରିଥିଲେ ।

ଲୁଇପାସ୍ତୁର ଭାବିଲେ, ଯଦି ଜୀବାଣୁମାନେ ମଦ୍ୟକୁ ନଷ୍ଟ କରି ଦେଉଅଛନ୍ତି, ତେବେ ମନୁଷ୍ୟ ଶରୀରରେ ନାନା ରୋଗର ଉତ୍ପତ୍ତି ପାଇଁ ମଧ୍ୟ କୌଣସି କାରଣ ଥାଇପାରେ । ସେ ଗବେଷଣା କରି ଶେଷରେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ନାନା ଜୀବାଣୁ-ଦ୍ୱାରହିଁ ରୋଗ ଜାତ ହୋଇଥାଏ । ତାଙ୍କର ଏହି ତଥ୍ୟ ପ୍ରଚାରର ଫଳରେ ଚିକିତ୍ସା ଜଗତରେ ଚହଳ ପଡ଼ିଗଲା । ଜୀବାଣୁମାନଙ୍କ ଯୋଗୁ ରୋଗର ଉତ୍ପତ୍ତି ହେଉଛି ବୋଲି ଜାଣି ପାରିଲାପରେ ସେହି ରୋଗ ଚିକିତ୍ସାର ଉପାୟ ଅତ୍ୟନ୍ତ ସହଜ ହେଲା । ତେଣୁ ଯେ କୌଣସି ପ୍ରକାରେ ଜୀବାଣୁମାନଙ୍କ ଆକ୍ରମଣରୁ କ୍ଷତ ସ୍ଥାନକୁ ଦୂରରେ ରଖିବା ପାଇଁ ଉଦ୍ୟମ କରାଗଲା ।

ଲୁଇ ପାସ୍ତୁରଙ୍କ ଉଦ୍ଭାବନଗୁଡ଼ିକ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଥିଲା । ମନୁଷ୍ୟ ସମାଜ କାଳ କାଳ ଧରି ନାନାରୋଗର ଆକ୍ରମଣରୁ ମୁକ୍ତିଲାଭ କରିପାରୁ ନ ଥିଲା । ରୋଗର କାରଣ ସମ୍ପର୍କରେ ସେ ଯେଉଁ ବାଟ ଦେଖାଇଥିଲେ, ତାହା ମନୁଷ୍ୟ ଜାତିକୁ ମହାସଙ୍କଟରୁ ରକ୍ଷା କଲା । ଫରାସୀ ସରକାର ଲୁଇପାସ୍ତୁରଙ୍କ ଏହି କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାହାଙ୍କୁ ପ୍ରଚୁର ଟଙ୍କା ପେନ୍‌ସନ୍ ଦେଇ ବିଶ୍ରାମ ନେବାକୁ ଅନୁରୋଧ କଲେ । ମାତ୍ର ଲୁଇ ପାସ୍ତୁର ଥିଲେ

ସତ୍ୟର ସାଧକ । ପ୍ରକୃତିର ରହସ୍ୟ ଉଦ୍‌ଘାଟନ ଥିଲା ତାଙ୍କର ଜୀବନର ମହାନ୍ ମନ୍ତ୍ର । ତେଣୁ ସେ କୌଣସିମତେ ବିଶ୍ରାମ ନେଇ ଆଳସ୍ୟରେ ଜୀବନ ଯାପନ କରିବାକୁ ପ୍ରସ୍ତୁତ ହେଲେ ନାହିଁ ।

ସେ ଆମରଣ ପ୍ରଗାଢ଼ ପରିଶ୍ରମ କରି ବିଜ୍ଞାନର ନୂଆ ନୂଆ ତଥ୍ୟ ଆବିଷ୍କାର କରିବାକୁ ଉଦ୍ୟମ କଲେ । ଏହି କାଳରେ ସେ ଜଳାତଙ୍କ ରୋଗର କାରଣ ବାହାର କରିବାକୁ ସକ୍ଷମ ହୋଇଥିଲେ । ତାଙ୍କ ଆବିଷ୍କାର ପୂର୍ବରୁ ପାଗଳ କୁକୁର କିମ୍ବା ପାଗଳା ବିଲୁଆ କାମୁଡ଼ିଲେ ତହିଁରୁ ସହଜରେ ମୁକ୍ତି ମିଳୁ ନ ଥିଲା । ନାନା ଜୀବଜନ୍ତୁର ଦେହରେ ପରୀକ୍ଷା କରି ସେ ଏହା ପ୍ରମାଣ କଲେ ଯେ ସୁସ୍ଥ ଶରୀରରେ ରୋଗର କିଛି ଜୀବାଣୁ ଇନ୍‌ଜେକ୍‌ସନ ମାଧ୍ୟମରେ ପ୍ରବେଶ କରାଇଲେ ତାହା ସେହି ରୋଗର ପ୍ରତିଷେଧକ ଭଳି କାର୍ଯ୍ୟ କରିଥାଏ । ଲୁଇ ପାସ୍ତୁରଙ୍କ ଏହି ନୂତନ ଉପାୟ ଉଦ୍ଭାବନ ଫଳରେ ହଇଜା ଏବଂ ବସନ୍ତ ରୋଗକୁ ଖୁବ୍ ସହଜରେ ଚିକିତ୍ସା କରାଯାଇ ପାରିଲା ।

ଯେଉଁ ରୋଗ ସବୁ ପୂର୍ବେ ଆତଙ୍କର କାରଣ ଥିଲା ତାହା ଲୁଇ ପାସ୍ତୁରଙ୍କ ଆବିଷ୍କାର ଫଳରେ ଆଜି ସେପରି ବୋଧ ହେଉ ନାହିଁ । ତାଙ୍କର ଅଗାଧ ପରିଶ୍ରମ ଯୋଗୁ ମନୁଷ୍ୟ ସମାଜ ନାନା ମାରାତ୍ମକ ରୋଗରୁ ରକ୍ଷା ପାଇଅଛି ।

ଏତ ଗଲା କେବଳ ରୋଗର କଥା ; ମାତ୍ର ଖାଦ୍ୟ ଜଗତରେ ମଧ୍ୟ ଲୁଇ ପାସ୍ତୁରଙ୍କ ଦାନ କିଛି କମ ନୁହେ । ବଗିଚାରେ କେତେ ସୁନ୍ଦର ସୁନ୍ଦର ଫୁଲ ଫଳ ହୁଏ । କୃଷକ ଶସ୍ୟକ୍ଷେତ୍ରରେ କେତେ କିସମର ପନିପରିବା ଓ ଶସ୍ୟ ଉତ୍ପାଦନ କରେ ; ମାତ୍ର ଏ ସବୁ ଅଧିକ କାଳ ରହେ ନାହିଁ । ସେଥିରୁ ଅଳ୍ପକାଳ ମଧ୍ୟରେ ଅନେକ

ପଚ ନଷ୍ଟ ହୋଇଯାଏ । ଖାଦ୍ୟ ଶସ୍ୟର ଏହ୍ବ ନଷ୍ଟି ପାଇଁ ଯେ ଜୀବାଣୁ ଦାୟୀ ଏଥିରେ ଆଦୌ ସନ୍ଦେହ ନାହିଁ । ତେଣୁ ଲୁଇ ପାସ୍ତୁରଙ୍କ ନୂତନ ଆବିଷ୍କାର ହିଁ ଏ ଦିଗରେ ଚିନ୍ତା କରିବାକୁ ଅଧିକ ସାହାଯ୍ୟ କଲା । ଫଳରେ ଖାଦ୍ୟ ପଦାର୍ଥ ଯେପରି ବହୁକାଳ ରହିପାରିବ, ସେଥିପାଇଁ ନୂଆ ନୂଆ ଉପାୟ ଆବିଷ୍କୃତ ହେଲା । ଏହି ଉପାୟରେ ଲୋକେ ବହୁଦିନ ପର୍ଯ୍ୟନ୍ତ ଖାଦ୍ୟ ଶସ୍ୟ ସାଇତି ରଖି ବ୍ୟବହାର କରିପାରିଲେ ।

ଲୁଇ ପାସ୍ତୁରଙ୍କ ମାଟିର ଦେହ ମାଟିରେ ମିଶି ଯାଇଛି ; ମାତ୍ର ତାଙ୍କର କାର୍ଯ୍ୟାବଳୀ ପାଇଁ ସେ ଆଜ ଅମର ହୋଇ ଅଛନ୍ତି । ବିଜ୍ଞାନ ଜଗତର ରହସ୍ୟ ଉଦ୍‌ଘାଟନ କରି ସେ ମନୁଷ୍ୟ ସମାଜର ମହୋପକାର ସାଧନ କରି ଯାଇଅଛନ୍ତି ।

———

# ଛାପାକଳ ଓ ଗୁଟେନ୍‌ବର୍ଗ

ଆଜ ଜଗତରେ ଯେଉଁ ଆଡ଼କୁ ଗୃହିଁବ, ସେ ଆଡ଼େ କାଗଜର ପ୍ରଭାବ ଦେଖିବାକୁ ମିଳବ । ପୁଣି କାଗଜରେ ଲେଖା ନହେଲେ ବା ଛାପା ନ ହେଲେ କାଗଜର ମୂଲ୍ୟ କଅଣ ? ଏହି କାଗଜର ଲେଖା ବଳରେ ଦୁନଆର କାରବାର ଗୃଲଛି ; ସରକାର ଗୃଲଛି । ଏହି କାଗଜରେ କେତେ ଭାଷାରେ ଲକ୍ଷ ଲକ୍ଷ କୋଟି-କୋଟି ବହି ଛାପା ହେଉଛି । ତାକୁ ପଢ଼ି କୋଟି କୋଟି ଲୋକ ଜ୍ଞାନ ଅର୍ଜନ କରୁଛନ୍ତି । ମୋଟ ଉପରେ ଲେଖା ଓ ଛାପାକଳ ବନା ଲୋକେ ଏ ଯୁଗରେ ଚଳପାରନ୍ତେ ନାହିଁ ।

ଆଜ ଯେ ମଣିଷ ଏପରି ଚତୁର ହୋଇ ଅଦ୍ଭୁତ କାମମାନ କରି ପାରୁଅଛି, ସେଥିର ମୂଳ କାରଣ ହେଉଛି ତାର ଜ୍ଞାନ ବା ବୁଦ୍ଧି । ଏହି ଜ୍ଞାନକୁ ବଢ଼ାଇବା ପାଇଁ ପଢ଼ିବା ଦରକାର । ପୁଣି ପଢ଼ିବା ନମନ୍ତେ ବହି ଲୋଡ଼ା । ବହିମାନଙ୍କରେ ଆଗକାଳର ପଣ୍ଡିତମାନେ ଯାହା ଜାଣିଥିଲେ ଏବଂ ଏବ କାଳର ପଣ୍ଡିତମାନେ ଯାହା ଜାଣନ୍ତି, ତାହା ସବୁ ରହିଛି । ତେଣୁ ଆମେ ସହଜରେ ଜ୍ଞାନ ପାଇ ପାରୁଅଛୁ । ଯଦ ବହି ନ ଥାନ୍ତା ତେବେ ଆମ୍ଭମାନଙ୍କ ପକ୍ଷରେ ଜ୍ଞାନ ଲାଭ କରିବା ଅତି କଠିନ ହୋଇ ଥାଆନ୍ତା ।

ଅତି ପୂର୍ବ କାଳରେ ଲୋକେ ଏତେ ବୁଦ୍ଧିମାନ୍ ନ ଥିଲେ । ହଜାର ହଜାର ବର୍ଷ ତଳେ ମଣିଷ ଓ ପଶୁ ମଧ୍ୟରେ ଅଳ୍ପ ପ୍ରଭେଦ ଥିଲା । ସେ କାଳର ଲୋକେ ବଣ ଜଙ୍ଗଲରେ, ଗୁହା ଭିତରେ ବା ଡାଳପତ୍ରର କୁଡ଼ଆରେ ରହୁଥିଲେ ; ପଶୁ ଶିକାର କରି ବା ବଣର ଫଳ ମୂଳ ଖାଇ ବଞ୍ଚୁଥିଲେ ; ପଶୁର ଚମଡ଼ାରେ ଦେହ ଘୋଡ଼ାଇ

ନିଜକୁ ଖରା ବର୍ଷାରୁ ରକ୍ଷା କରୁଥିଲେ । ପାଠ ପଢ଼ିବା କଅଣ— ସେମାନଙ୍କୁ ଜଣା ନ ଥିଲା । ପିଲାଟିଏ ବଡ଼ ହେଲାକ୍ଷଣି ବଡ଼ ମଣିଷଙ୍କ ସଙ୍ଗେ ବଣ ପାହାଡ଼ରେ ବୁଲି ଫଳମୂଳ ସଂଗ୍ରହ କରିବା ବା ପଶୁ ମାରିବା ଶିଖୁଥିଲା ।

କେତେକାଳ ଏହିପରି ଗତ ହେଲା । କ୍ରମେ କ୍ରମେ ମଣିଷ ଓ ପଶୁ ମଧ୍ୟରେ ବେଶୀ ପ୍ରଭେଦ ଘଟିଲା । ପଶୁ ଯେପରି ଥିଲା, ସେହିପରି ରହିଲା, ମାତ୍ର ମଣିଷ ଅଳ୍ପେ ଅଳ୍ପେ ନୂଆ କଥାମାନ ବାହାର କଲା । ଯେଉଁ ମଣିଷ କଞ୍ଚା ମାଉଁସ ବା ଫଳ ମୂଳ ଖାଉଥିଲା, ସେ ନିଆଁର ବ୍ୟବହାର ଶିଖିଲା ; ଖାଇବା ଜିନିଷ ସିଝାଇ ଖାଇଲା । ପଶୁର ଚମ ବା ଗଛର ବକଳ ପରିବର୍ତ୍ତେ ଲୁଗା ବୁଣି ପିନ୍ଧିଲା ; ଲୁହାରେ ହାତ ହତିଆର ତିଆରି କଲା ; ଜମି ଚାଷ କରି ଫସଲ ଅମଦାନି କଲା ।

ତାର ଭାବିବାର ଚିନ୍ତିବାର ଶକ୍ତି ବଢ଼ିବାକୁ ଲାଗିଲା । କି ଉପାୟରେ ସେ ତା ମନକଥା ଦୂରରେ ଥିବା ଲୋକକୁ ଜଣାଇ ପାରିବ, ସେଥିପାଇଁ ଲେଖିବା ପ୍ରଣାଳୀ ବାହାର କଲା । କଥାକୁ ଅକ୍ଷର ଆକାରରେ ପ୍ରକାଶ କରିବାଦ୍ୱାରା ସେ ନିଜ ମନକଥାକୁ ଦୂରସ୍ଥ ଅନ୍ୟ ଲୋକଙ୍କୁ ଜଣାଇପାରିଲା । ଜଣେ ମଣିଷ ମରିଗଲା-ପରେ ମଧ୍ୟ ତାର ମନ କଥାକୁ ପରବର୍ତ୍ତୀ କାଳର ଲୋକେ ଲେଖା ସାହାଯ୍ୟରେ ଜାଣି ପାରିଲେ ।

ଲେଖିବା ପାଇଁ ଭିନ୍ନ ଭିନ୍ନ ଦେଶ ଓ କାଳରେ ଭିନ୍ନ ଭିନ୍ନ ପଦାର୍ଥ ବ୍ୟବହାର କରାଯାଉଥିଲା । ପଥର ଉପରେ, ଭୂର୍ଜ ପତ୍ରରେ ତାଳପତ୍ରରେ ଓ କଦଳୀ ପତ୍ରରେ ଲେଖା ଯାଉଥିବାର ଜଣାଯାଏ ।

ଆମ ଦେଶରେ ତାଳପତ୍ର ଉପରେ ଲେଖନରେ ଲେଖିବା ଅତି ସାଧାରଣ ଥିଲା । ଶହେବର୍ଷ ତଳେ ମଧ୍ୟ କାଗଜର ବ୍ୟବହାର ଅତି ଅଳ୍ପ ଥିଲା ।

କେଉଁ ଅଞ୍ଚଳର ଲୋକେ ପ୍ରଥମେ ଅକ୍ଷର ଆବିଷ୍କାର କରିଥିଲେ, ତାହା ଜାଣିବାର ଉପାୟ ନାହିଁ । ହଜାର ହଜାର ବର୍ଷ ପୂର୍ବେ ମିଶର, ଗ୍ରୀସ ଓ ଭାରତରେ ଅକ୍ଷର ପ୍ରଚଳିତ ଥିବାର ଜଣାଯାଏ । ମିଶରର ରାଜାମାନଙ୍କ କବର ଭିତରୁ ଏକ ପ୍ରକାର ଲେଖା ମିଳୁଛି । ଭାରତର ମହେଞ୍ଜୋଦାରୋ ଓ ହରପ୍ପାରୁ ପୂର୍ବକାଳର ଲେଖା ମିଳୁଛି । ଏ ପ୍ରକାର ଲେଖା ଆଜିକାଲି ଚଳୁନାହିଁ । ତେଣୁ ପଣ୍ଡିତମାନେ ବହୁ କଷ୍ଟରେ ସେ ଲେଖା ପଢ଼ି ତାର ଅର୍ଥ ବାହାରି କରିବାକୁ ଚେଷ୍ଟା କରୁଛନ୍ତି । ଆମ ଓଡ଼ିଶାରେ ଭୁବନେଶ୍ୱର ପାଖ ଧଉଳି ଗିରିରେ ଓ ଉଦୟଗିରିରେ ଏବଂ ଗଞ୍ଜାମ ଜିଲ୍ଲାର ଜଉଗଡ଼ରେ ପଥର ଦେହରେ ଖୋଳା ହୋଇଥିବା କେତେକ ଲେଖା ଅଛି । ପଣ୍ଡିତମାନେ ତାକୁ ପଢ଼ି ତାର ଅର୍ଥ ବାହାର କରିଛନ୍ତି । ଧଉଳିଗିରି ଓ ଜଉଗଡ଼ରେ ଅଶୋକଙ୍କର ଅନୁଶାସନମାନ ଓ ଉଦୟଗିରି ପାହାଡ଼ରେ ସମ୍ରାଟ ଖାରବେଳଙ୍କର ଅନୁଶାସନ ଖୋଳା ଯାଇଥିବାର ଜଣାଯାଇଅଛି । ଏ ଗୁଡ଼ିକ ପ୍ରାୟ ଦୁଇ ହଜାର ବର୍ଷ ତଳର ଅକ୍ଷର ।

କ୍ରମେ ଲେଖାର ପ୍ରଚଳନ ବଢ଼ିଲା । ଜ୍ଞାନୀ ଲୋକେ ଯାହା ଲେଖିଲେ, ତାକୁ ଅନ୍ୟମାନେ ନକଲ କରି ପଢ଼ିଲେ ; କିନ୍ତୁ ନକଲ କରିବା କମ ପରିଶ୍ରମର କଥା ନୁହେ । ଖଣ୍ଡିଏ ଖଣ୍ଡିଏ ବହି ନକଲ କରିବାକୁ ବର୍ଷ ବର୍ଷ ଲାଗିଯାଉଥିଲା । ତେଣୁ ବହି ବା ପୋଥି ଖୁବ କମ ଥିଲା ଓ ତାର ମୂଲ୍ୟ ମଧ୍ୟ ଅତ୍ୟଧିକ ଥିଲା । ଖୁବ କମ ଲୋକ ଶିକ୍ଷା ପାଇ ପାରୁଥିଲେ ।

ଆଜକାଲି ଅବସ୍ଥା ବଦଳି ଯାଇଛି । ନାନା ବିଷୟରେ ଲକ୍ଷ ଲକ୍ଷ ବହି ଖୁବ୍ କମ୍ ଦାମରେ ବିକ୍ରୀ ହେଉଛି । ଏହା କେବଳ ଛାପାକଳ ଯୋଗେ ସମ୍ଭବ ହୋଇ ପାରୁଛି । ଏବେ ବହି କିପରି ଛାପାହୁଏ, ତାହା ବିସ୍ତାର କରିବା ;

ଲେଖକ ପ୍ରଥମେ ତାର ଚିନ୍ତାକୁ ସଜେଇ ଲେଖେ । ସେହି ଲେଖା ହୁଏତ ଅନେକ ଥର ସଂଶୋଧିତ ହୁଏ । ଯଥାସ୍ଥାନରେ ଚିତ୍ର ଆଦି ଦିଆଯାଏ । ସେଥିପାଇଁ ହୁଏତ କୌଣସି ଚିତ୍ରକରର ସାହାଯ୍ୟ ନିଆଯାଏ । ଛାପାଖାନାରେ ଅକ୍ଷରଗୁଡ଼ିକ ସଜାଇ, ଲେଖାକୁ ଛାପିବା ପାଇଁ ପ୍ରସ୍ତୁତ କରାଯାଏ । ଛବି ବା ଚିତ୍ରର ମଧ୍ୟ ସେହିପରି ବ୍ଲକ୍ ତିଆରି କରାଯାଇ ଯଥାସ୍ଥାନରେ ଦିଆଯାଏ । ପ୍ରଥମେ ଛାପାକଳରେ ଯେଉଁ ଛାପା ହୁଏ ତାକୁ ସଂଶୋଧନ କରାଯାଏ । ବାରମ୍ବାର ସଂଶୋଧନ ପରେ ଛାପା ନିର୍ଭୁଲ ଜଣାଗଲେ ବହୁ ସଂଖ୍ୟାରେ ବହି ଛପାଯାଏ ।

ବହି ଛାପିବା ପାଇଁ ଛାପାକଳ ଛଡ଼ା କାଗଜ, କାଳି ମଧ୍ୟ ଦରକାର ହୁଏ । ଛାପା ସରିବା ପରେ ବହିକୁ ସିଲେଇ କରି ବାନ୍ଧିବାକୁ ଓ ସମାନ କରି କାଟିବାକୁ ପଡ଼େ । ତା ପରେ ବହି ବିକା ହେବାପାଇଁ ବଜାରକୁ ଆସେ ।

ଯେଉଁ ମହାପୁରୁଷଙ୍କ ଚେଷ୍ଟାରୁ ଅଳ୍ପ ସମୟ ଭିତରେ ହଜାର ହଜାର, ଏପରିକି ଲକ୍ଷ ଲକ୍ଷ ବହି ଛାପିବା ସମ୍ଭବ ହୋଇ ପାରିଛି, ତାଙ୍କର ନାମ. ଗୁଟେନବର୍ଗ । ସେ ପ୍ରାୟ ୧୪୦୦ ଖ୍ରୀଷ୍ଟାବ୍ଦରେ ଜର୍ମାନୀ ଦେଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପୂର୍ବରୁ କେତେକ ଲୋକ ଛାପିବାପାଇଁ ଚେଷ୍ଟା କରିଥିଲେ । କେହି କେହି କାଠରେ

ଗୋଟିଏ ଗୋଟିଏ ଅକ୍ଷର ଖୋଳି ତାକୁ ଯୋଡ଼ି ଛାପୁଥିଲେ । ଛବି ମଧ୍ୟ ସେହି ପରି କାଠରେ ଖୋଳାଯାଇ ଛାପା ଯାଉଥିଲା ।



[ଗୁଟେନ ବର୍ଗ]

ଏପରି କାଠ ଅକ୍ଷର ଯୋଡ଼ି ଛାପିବା ଦ୍ୱାରା ଲେଖିବାଠାରୁ କମ ପରିଶ୍ରମ ହେଉଥିଲା ସତ ; ତଥାପି ଏଥିରେ ବହୁସଂଖ୍ୟକ ବହି ଅଳ୍ପ ସମୟ ଭିତରେ ଛାପି ହେଉ ନ ଥିଲା ।

ଗୁଟେନବର୍ଗ ଦେଖିଲେ ଯେ ଅକ୍ଷର ତିଆରି କରିବା ହେଉଛି ପ୍ରଧାନ କାର୍ଯ୍ୟ । ଖଣ୍ଡିଏ ବହିରେ ଗୋଟିଏ ଗୋଟିଏ ଅକ୍ଷର ଶହ ଶହ ଥର ବ୍ୟବହାର କରିବାକୁ ପଡ଼େ । ହାତରେ ଖୋଳି କାଠରେ ଏତେ ଅକ୍ଷର ତିଆରି କରିବା ସହଜ ନୁହେ । ଖଣ୍ଡିଏ ଖଣ୍ଡିଏ ବହିରେ କେତେ ଅକ୍ଷର ଥାଏ, କେବେ ଭାବିଛ କି ?

ମନେକର ଖଣ୍ଡିଏ ବହିରେ ତିନଶହ ପୃଷ୍ଠା ଅଛି । ପ୍ରତି ପୃଷ୍ଠାରେ ଯଦି ୩୦ ଧାଡ଼ି ରହେ ଏବଂ ପ୍ରତି ଧାଡ଼ିରେ ୫୦ଟି ଅକ୍ଷର ରହେ ତେବେ ବହିଟିରେ ରହିବ (୩୦୦ × ୩୦ × ୫୦ = ୪୫୦୦୦୦) ଚାରି ଲକ୍ଷ ପଚାଶ ହଜାର ଅକ୍ଷର । କାଠରେ ଚାରିଲକ୍ଷ ପଚାଶ ହଜାର ଅକ୍ଷର ଖୋଳିବା କଅଣ ସହଜ କଥା !

ଗୁଟେନବର୍ଗ ଦେଖିଲେ ଯେ ପ୍ରତ୍ୟେକ ଅକ୍ଷର ବହୁ ସଂଖ୍ୟାରେ ତିଆରି କରି ଅଲଗା ଅଲଗା ଜାଗାରେ ରଖି, ଦରକାର ଅନୁସାରେ ଅକ୍ଷର ଆଣି ଖଞ୍ଜିଲେ କାମ ଚଞ୍ଚଳ ହୋଇପାରିବ । ତେଣୁ ଅଳ୍ପ ସମୟ ଭିତରେ କିପରି ବହୁତ ଗୁଡ଼ିଏ ଅକ୍ଷର ତିଆରି କରିହେବ, ତାହାରି ସେ ଚିନ୍ତା କଲେ ।

ସେ ଆଗରୁ ଧାତୁ ବିଷୟରେ ଅନେକ କଥା ଜାଣିଥିଲେ । କୌଣସି ଗୋଟିଏ ଧାତୁଖଣ୍ଡ ଉପରେ ଗୋଟିଏ ଅକ୍ଷର ଖୋଳି ତା ଉପରେ ତରଳ ଧାତୁ ଢାଳିବାଦ୍ୱାରା ସେ ସେହି ଅକ୍ଷରଟିକୁ ବହୁସଂଖ୍ୟାରେ ତିଆରି କରି ପାରିଲେ । ପ୍ରତ୍ୟେକ ଅକ୍ଷରରୁ ଅନେକଗୁଡ଼ିଏ ଅକ୍ଷର ତିଆରି ହେବାପରେ ସେ ଅକ୍ଷରକୁ ଦରକାର ଅନୁସାରେ ଯୋଡ଼ି କାଠ ଛାଞ୍ଚରେ ଖଞ୍ଜି, କାଳି ଦେଲେ ଏବଂ କାଗଜ ଉପରେ ଛାଞ୍ଚକୁ ଚାପିଲେ ଅକ୍ଷରଗୁଡ଼ିକ ଛାପି ହୋଇ ଯାଉଥିଲା ।

ଗୁଟେନବର୍ଗ ନିଜ ସହରରେ ୧୪୫୦ ମସିହାରେ ଗୋଟିଏ ଛାପାଖାନା ବସାଇଲେ । ଏହି ସମୟରେ ବେଲଜିଅମର ଗୋଟିଏ ସହରରେ ଉଇଲିଅମ କାକ୍‌ସଟନ ବୋଲି ଜଣେ ଲୋକ ଥିଲେ । ସେ ଗୁଟେନବର୍ଗଙ୍କ ଛାପାଖାନା କଥା ଶୁଣି ତାଙ୍କ ପାଖକୁ ଆସିଲେ । ଛାପାଖାନାର କାମ ଶିଖି ସେ ଇଂଲଣ୍ଡକୁ ଚାଲିଗଲେ ଓ ଲଣ୍ଡନ ସହରରେ ଗୋଟିଏ ଛାପାଖାନା ବସାଇଲେ । ଏଥିପୂର୍ବରୁ ଇଂଲଣ୍ଡର ଲୋକେ ଛାପାଖାନା କଅଣ ଜାଣି ନ ଥିଲେ ।

ପ୍ରଥମେ ଛାପାଖାନାର ସବୁ କାମ ହାତରେ କରାଯାଉଥିଲା । ବାଷ୍ପୀୟ ଶକ୍ତି ଆବିଷ୍କାର କରାଯିବା ପରେ ସେହି ଶକ୍ତିକୁ ଛାପିବା କାର୍ଯ୍ୟରେ ଲଗାଗଲା । ଲଣ୍ଡନର ଟାଇମ୍‌ସ ଖବର କାଗଜ ପ୍ରଥମେ ବାଷ୍ପୀୟ ଶକ୍ତିଦ୍ୱାରା ଛାପାକାର୍ଯ୍ୟ କରିଥିଲା । ଏହାଦ୍ୱାରା ଘଣ୍ଟାକେ ପ୍ରାୟ ଏକହଜାର ଖଣ୍ଡ ଖବର କାଗଜ ଛାପାଯାଉଥିଲା । କ୍ରମେ ବିଜୁଳି ଶକ୍ତିର ବ୍ୟବହାର ହେଲା ଓ ଛାପାକଳର ମଧ୍ୟ ଉନ୍ନତି ହେଲା ଏହା ଫଳରେ ଘଣ୍ଟାକେ କୋଡ଼ିଏ ହଜାର ଖଣ୍ଡ କାଗଜ ଛାପିବା ମଧ୍ୟ ଅସମ୍ଭବ ହେଲା ନାହିଁ ।



[ଆଧୁନିକ ଛାପାକଳ]

ଆଜକାଲି ରାତି ପାହିଲା ବେଳକୁ ଆମ ଦୁଆରେ ଖବର କାଗଜ ଉପସ୍ଥିତ । ଦୋକାନରେ ଯେ କୌଣସି ବହି କିଣିବାକୁ ମଧ୍ୟ ମିଳିବ । ଏ ସବୁ ଛାପାକଳ ପ୍ରସାଦରୁ ହୋଇ ପାରିଛି । କିନ୍ତୁ ଏପରି ଛାପିବାର ପ୍ରଣାଳୀ ଯେଉଁ ଗୁଟେନବର୍ଗ ବାହାର କରିଥିଲେ, ତାଙ୍କ କଥା କିଏ ମନେ ପକାଏ କି ?

ଗୁଟେନବର୍ଗ ଛାପାଖାନାର ଏତେ ଉନ୍ନତି କରି ନ ଥିଲେ ପୃଥିବୀର ଲୋକେ ଏପରି ଜ୍ଞାନଲାଭ କରିବାର ସୁବିଧା କେବେ ହେଲେ ପାଇ ପାରି ନ ଥାନ୍ତେ, ଏ କଥା ନିଶ୍ଚିତ ।

# ମହାତ୍ମା ଗାନ୍ଧି

ଅନେକ ବର୍ଷ ତଳର କଥା । ଥରେ ଗୋଟିଏ ପ୍ରାଥମିକ ବିଦ୍ୟାଳୟକୁ ପରିଦର୍ଶକ କର୍ମଚାରୀ ଆସିଥାଆନ୍ତି । ସେ ଉଚ୍ଚ ଶ୍ରେଣୀରେ ଶ୍ରୁତିଲିଖନ ପରୀକ୍ଷା କରୁଥିଲେ । ଶ୍ରେଣୀର ଶିକ୍ଷକ ଦେଖିଲେ ଯେ ଗୋଟିଏ ପିଲା ଶବ୍ଦର ବନାନ ଭୁଲ ଲେଖିଅଛି । ସେହି ଭୁଲ ଶବ୍ଦଟିକୁ ଠିକ୍ କରି ଲେଖିବା ନିମନ୍ତେ ସେ ସେହି ପିଲାଟିକୁ ହାତ ଠାରି ଜଣାଇ ଦେଲେ । ମାତ୍ର ସେହି ବାଳକଟି ଅସାଧୁତାକୁ ପିଲାଦିନୁ ଘୃଣା କରୁଥିଲେ । ତେଣୁ ଶିକ୍ଷକଙ୍କର ଏପରି ସଙ୍କେତକୁ ସେ ଗ୍ରହଣ କରି ନ ଥିଲେ ।

ଏହି ବାଳକ ହେଉଛନ୍ତି ମହାତ୍ମାଗାନ୍ଧି । ତାଙ୍କର ପୂରା ନାମ ମୋହନଦାସ କରମଚାନ୍ଦ ଗାନ୍ଧି ।



ମହାତ୍ମାଗାନ୍ଧିଙ୍କର ପିତାଙ୍କର ନାମ ହେଉଛି କାବା ଗାନ୍ଧି । ସେ ରାଜକୋଟ ରାଜ୍ୟର ଦେବାନ ଥିଲେ । ତାଙ୍କପରି ନିର୍ଭୀକ ରାଜକର୍ମଚାରୀ ରାଜ-କୋଟରେ ସେତେବେଳେ କେ ଥିଲେ କହିଲେ ଚଳେ । ଗାନ୍ଧିଙ୍କର ମାତା ପୁତୁଳିବାଈ ଅତ୍ୟନ୍ତ ଧର୍ମପରାୟଣା ଥିଲେ । ବାହୁବ୍ରତ, ତେର ଉପାସ କରି ସେ ଦିନ କାଟୁଥିଲେ । ସୂର୍ଯ୍ୟ

ଦେବତାଙ୍କୁ ଦର୍ଶନ କରି ପୂଜା ନ କଲେ ସେ ଜଳ ଗ୍ରହଣ କରୁ ନ ଥିଲେ । ବର୍ଷା କାଳରେ ବେଳେ ବେଳେ ମେଘୁଆ ପାଗହେତୁ ସେ ସୂର୍ଯ୍ୟଙ୍କୁ ଦେଖି ନ ପାରି ଉପାସ ରହୁଥିଲେ ।

ମହାତ୍ମାଗାନ୍ଧି ଏହିଭଳି ପିତାମାତାଙ୍କର ସନ୍ତାନ ଥିଲେ । ସେ ୧୮୬୯ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସ ଦୁଇ ତାରିଖରେ କାଥିଆବାଡ଼ର ପୋରବନ୍ଦରଠାରେ ଜନ୍ମଗ୍ରହଣ କରିଥିଲେ । ପିତାମାତାଙ୍କର ସ୍ୱଭାବ ଗାନ୍ଧିଙ୍କ ଚରିତ୍ର ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଗାନ୍ଧି ପିଲାଦିନୁ ସତ୍ୟ କହିବାକୁ ଭଲ ପାଉଥିଲେ । କୌଣସି ପ୍ରକାର ଅନ୍ୟାୟ କାର୍ଯ୍ୟ କରିବା ତାଙ୍କ ଜାତକରେ ନ ଥିଲା

ପୁରାଣର ଆଦର୍ଶ କଥାଗୁଡ଼ିକ ତାଙ୍କ ମନକୁ ବହୁତ ଛୁଉଁଥିଲା । ବିଶେଷତଃ 'ରାଜା ହରିଶ୍ଚନ୍ଦ୍ର' ଏବଂ 'ଶ୍ରବଣ କୁମାର' ଗଳ୍ପ ଦୁଇଟି ପଢ଼ି ସେ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ରାଜା ହରିଶ୍ଚନ୍ଦ୍ର ସତ୍ୟରକ୍ଷା ପାଇଁ ସର୍ବସ୍ୱ ହରାଇଥିଲେ । ପିତାମାତାଙ୍କର ସେବା କରି ଶ୍ରବଣକୁମାର ମୃତ୍ୟୁ ବରଣ କରିଥିଲେ । ଗାନ୍ଧି ଏହି ଗଳ୍ପ ପଢ଼ିଲାଦିନୁ ପିତାମାତାଙ୍କର ଭକ୍ତ ହୋଇ ପଡ଼ିଥିଲେ । ସେମାନଙ୍କର ଆଦେଶ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ପିତାମାତା ଅସନ୍ତୁଷ୍ଟ ହେଲେ ଜୀବନରେ ସୁଖଶାନ୍ତି ମିଳିବ ନାହିଁ ବୋଲି ତାଙ୍କର ବିଶ୍ୱାସ ହେଉଥିଲା ।

ସେ କାଳରେ ଯେଉଁମାନେ ଉଚ୍ଚଶିକ୍ଷା ପାଇଁ ବିଲାତ ଯାଉଥିଲେ, ସେମାନେ ପ୍ରାୟ ମଦ ପିଉଥିଲେ ଏବଂ ମାଂସ ଭକ୍ଷଣ କରୁଥିଲେ । ମାତ୍ର ବିଲାତ ଯିବା ପୂର୍ବରୁ ଗାନ୍ଧି ନିଜର ମାତାଙ୍କ ନିକଟରେ ସତ୍ୟ କରିଥିଲେ ଯେ ସେ ଆଦୌ ମଦ୍ୟ ପିଇବେ ନାହିଁ କି ମାଂସ ଖାଇବେ ନାହିଁ । ୧୮୯୧ ସାଲରେ ସେ ବିଲାତରୁ

ବାରିଷ୍ଟର ପାସ କରି ଫେରିଲେ । ମାତ୍ର ମାତାଙ୍କ ଆଗରେ ଯେଉଁ ସତ୍ୟ କରି ଯାଇଥିଲେ ତାହା ସେ କେବେ ହେଲେ ଅବମାନନା କରି ନ ଥିଲେ ।

ଭାରତରେ ଦୁଇଟି ବର୍ଷ ବାରିଷ୍ଟରି କରିବାପରେ ଗାନ୍ଧି ଏକ ମୋକଦ୍ଦମା ଚଳାଇବା ପାଇଁ ଦକ୍ଷିଣ ଆଫ୍ରିକା ଗଲେ । ସେତେବେଳେ ଆଫ୍ରିକାକୁ ଅନ୍ଧାର ମହାଦେଶ ବୋଲି କୁହାଯାଉଥିଲା । ସେଠାର ଲୋକେ ବଡ଼ ଅନୁନ୍ନତ ଥିଲେ । ବିଲାତିର ଗୋରା ଲୋକେ ଏହି ଦେଶକୁ ଶାସନ କରୁଥିଲେ । ଗୋରା ଶାସକଗଣ କଳା ଲୋକଙ୍କୁ ବଡ଼ ହଇରାଣ କରୁଥିଲେ । ସେଠାରେ ବହୁତ ଭାରତୀୟ ମଧ୍ୟ ବସବାସ କରୁଥିଲେ । କିନ୍ତୁ ସେଠାରେ ଗୋରା ଲୋକଙ୍କ ଛଡ଼ା କୌଣସି କଳା ଲୋକର ନାଗରିକ ଅଧିକାର ନ ଥିଲା । ସବୁ କ୍ଷେତ୍ରରେ ସେମାନେ ଅପମାନିତ ହେଉଥିଲେ । ଥରେ ମହାତ୍ମାଗାନ୍ଧି ପ୍ରଥମ ଶ୍ରେଣୀ ଟିକଟ କରି ଗାଡ଼ିରେ ବସିଲେ । ମାତ୍ର ସେଠାରେ ଜଣେ ଗୋରା ଲୋକ ବସିବାରୁ ତାଙ୍କୁ ପୋଲିସ-ଦ୍ୱାରା ବାହାର କରି ଦିଆଗଲା । କଳା ଲୋକଙ୍କ ପ୍ରତି ଏ ଅପମାନ ଗାନ୍ଧି ସହିପାରିଲେ ନାହିଁ । ଏହାର ପ୍ରତିବାଦ କରି କୌଣସିମତେ କଳା ଲୋକଙ୍କର ସମ୍ମାନ ଫେରାଇ ଆଣିବାକୁ ହେବ ବୋଲି ସେ ପ୍ରତିଜ୍ଞା କଲେ ।

କଳା ଓ ଗୋରା ଭେଦଭାବ ନ ରଖିବା ହେଲା ଗାନ୍ଧିଙ୍କ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ । ସେ ଆଫ୍ରିକାର ଭାରତୀୟ ଲୋକମାନଙ୍କୁ ଏକାଠି କରି ଆନ୍ଦୋଳନ ଚଳାଇଲେ । ଏହି ଆନ୍ଦୋଳନର ନାମ ହେଲା 'ସତ୍ୟାଗ୍ରହ ଆନ୍ଦୋଳନ' । ଏଥିପାଇଁ ଗାନ୍ଧି ବହୁତ ଦୁଃଖ କଷ୍ଟ ସହିଲେ । ଗୋରା ଶାସକମାନେ ତାଙ୍କୁ ଜେଲଦଣ୍ଡ

ହେଲେ । ବାରମ୍ବାର ଜେଲ ଦଣ୍ଡ ପାଇ ମଧ୍ୟ ସେ ଦବିଗଲେ ନାହିଁ । ଆଫ୍ରିକାରୁ ଏହି ଅନ୍ୟାୟ ଦୂର କରିବା ପାଇଁ ସେ ଲାଗିପଡ଼ିଲେ । ତାଙ୍କର ଆନ୍ଦୋଳନ ଥିଲା ସମ୍ପୂର୍ଣ୍ଣ ଅହିଂସାପୂର୍ଣ୍ଣ । ତେଣୁ ପରିଶେଷରେ ଗାନ୍ଧିଙ୍କର ଜୟ ହେଲା । ଆଫ୍ରିକାରୁ କଳା ଗୋରା-ଭେଦ ଦୂର ହେଲା । ଆଫ୍ରିକାର କଳା ଲୋକଙ୍କୁ ନାଗରିକ ଅଧିକାର ଦେବାପାଇଁ ସରକାର ଆଇନ ତିଆରି କଲେ । ଏହା ଫଳରେ ଗାନ୍ଧିଙ୍କର ଯଶ ଚାରିଆଡ଼େ ବ୍ୟାପିଗଲା ।

ଅନ୍ୟାୟ ବିରୁଦ୍ଧରେ ଲଢ଼ାଇ କରି ଗାନ୍ଧି ଜୟଯୁକ୍ତ ହେଲେ ଏବଂ ଭାରତକୁ ଫେରି ଆସିଲେ । ସେତେବେଳେ ଭାରତ ପରାଧୀନ ଥିଲା । ଇଂରେଜମାନେ ଭାରତକୁ ଶାସନ କରୁଥିଲେ । ସେମାନେ ଭାରତରେ ନିଜର ମନଇଚ୍ଛା ଶାସନ ଚଳାଇଥିଲେ । ଲୋକମାନଙ୍କର ଦୁଃଖର ସୀମା ନ ଥିଲା । ହେଲେହେଁ ପାଟି ଫିଟାଇ କୌଣସି କଥା ଦାବୀ କରିବାକୁ ଲୋକମାନଙ୍କର ସାହସ ହେଉ ନ ଥିଲା । ସାମାନ୍ୟ ଛୁରିଟିଏ ମଧ୍ୟ ଆତ୍ମରକ୍ଷା ପାଇଁ ପାଖରେ ରଖିବାର ଅଧିକାର ଭାରତୀୟଙ୍କର ନ ଥିଲା । ଗାନ୍ଧି ଏ ଅନ୍ୟାୟ ସହି ପାରିଲେ ନାହିଁ । ସେତେବେଳେ ଜାତୀୟ କଂଗ୍ରେସ ଭାରତର ସ୍ୱାଧୀନତା ପାଇଁ ଦାବୀ କରୁଥାଆନ୍ତି । ସେହି ଅନୁଷ୍ଠାନର କେତେକ ନେତା ତୋଷାମୋଦ କରି ଇଂରେଜଙ୍କ ଠାରୁ ଅଧିକାର ପାଇବେ ବୋଲି ଭାବୁଥାଆନ୍ତି । ମାତ୍ର ଗାନ୍ଧି ଦକ୍ଷିଣ ଆଫ୍ରିକାରେ ଯେଉଁ ନୀତି ବଳରେ ଜୟଯୁକ୍ତ ହୋଇଥିଲେ, ତାହା ଭାରତରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରୟୋଗ କରିବାକୁ ମନସ୍ଥ କଲେ । ବହୁ ଆଲୋଚନା ପରେ ତାଙ୍କର "ଅସହଯୋଗ ଆନ୍ଦୋଳନ" ପ୍ରସ୍ତାବ କଂଗ୍ରେସ ଗ୍ରହଣ କଲା ଏବଂ ଗାନ୍ଧି ଅସହଯୋଗ ଆନ୍ଦୋଳନର ନେତା ହେଲେ ।

ଗାନ୍ଧିଙ୍କର ରାଜନୀତିର ମୂଳମନ୍ତ୍ର ହେଲା ସତ୍ୟ ଓ ଅହିଂସା । ସେ ବଡ଼ ଧର୍ମପ୍ରାଣ ଥିଲେ । ପ୍ରବଳ ପ୍ରତାପୀ ଇଂରେଜଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବା ଭାରତୀୟଙ୍କ ପକ୍ଷରେ ସମ୍ଭବ ନ ଥିଲା । ତାହାଛଡ଼ା ହିଂସାତ୍ମକ ଉପାୟରେ ଯେଉଁ ଆନ୍ଦୋଳନ ହୁଏ ତାହା ନାନା ଦୁଃଖର କାରଣ ହୁଏ । ଗାନ୍ଧି ନୈତିକ ବଳରେ ଅଧିକ ବିଶ୍ୱାସ କରୁଥିଲେ । ତାଙ୍କ ମତରେ ଅହିଂସା ଅଥବା ନୈତିକ ବଳଦ୍ୱାରା ହିଂସାକୁ ସହଜରେ ଦମନ କରାଯାଇ ପାରେ ।

ତେଣୁ ସେ ଅସହଯୋଗର ବାଣୀ ପ୍ରଚାର କଲେ । ଏ ଦେଶର ଲୋକେ ବିଦେଶୀ ଜିନିଷ ବ୍ୟବହାର କରି ପ୍ରତିବର୍ଷ କୋଟି କୋଟି ଟଙ୍କା ବିଦେଶକୁ ଦେଇ ଦେଉଥିଲେ । ଗାନ୍ଧି ପ୍ରଚାର କଲେ "ସମସ୍ତେ ଦେଶୀ ଜିନିଷ ବ୍ୟବହାର କରିବା ଉଚିତ । ଦେଶରେ କୁଟୀର ଶିଳ୍ପର ବିକାଶ ହେଲେ ଲୋକେ ଆଉ ବିଦେଶ ଉପରେ ନିର୍ଭର କରିବେ ନାହିଁ ଏବଂ ଦେଶର ପଇସା ବିଦେଶକୁ ଚାଲିଯିବ ନାହିଁ । ଦେଶୀୟ ଲୋକଙ୍କ ସାହାଯ୍ୟରେ ଇଂରେଜମାନେ ଏ ଦେଶକୁ ଶାସନ କରିବାକୁ କ୍ଷମ ହେଉଛନ୍ତି । ତେଣୁ ସେମାନଙ୍କ ସହିତ ଅସହଯୋଗ କଲେ ଆପେ ସେମାନେ ଏ ଦେଶ ଛାଡ଼ି ଚାଲିଯିବେ ।"

ଗାନ୍ଧିଙ୍କର ଏ ଆହ୍ୱାନକୁ ସେତେବେଳେ ଅନେକ ଲୋକ ବିଶ୍ୱାସ କରୁ ନ ଥିଲେ । ମାତ୍ର ପରେ ଅଧିକ ସଂଖ୍ୟାର ଲୋକ ଏହା ବିଶ୍ୱାସ କରିବାକୁ ଲାଗିଲେ ଏବଂ ଅସହଯୋଗ ଆନ୍ଦୋଳନ ତେଜି ଉଠିଲା । ସେହି ଆନ୍ଦୋଳନରେ ଗାନ୍ଧିଙ୍କ ସମେତ ହଜାର ହଜାର ନେତା ଓ କର୍ମୀ ଜେଲ୍ ଗଲେ ଏବଂ ଲାଠି ମାଡ଼ ଖାଇଲେ । ମାତ୍ର

ଏଥିରେ ଆନ୍ଦୋଳନ ଦବିଲା ନାହିଁ । ଶେଷରେ ଇଂରେଜ-ମାନେ ବାଧ୍ୟହୋଇ ୧୯୪୭ ସାଲ ଅଗଷ୍ଟ ୧୫ ତାରିଖ ଦିନ ଭାରତକୁ ସ୍ୱାଧୀନତା ଦେଇ ନିଜ ଦେଶକୁ ଫେରିଗଲେ ।

ପୃଥିବୀରେ କୌଣସି ଦେଶ ବିନା ରକ୍ତପାତରେ ସ୍ୱାଧୀନତା ଲାଭ କରିଥିବା କଥା ଇତିହାସରୁ ଜଣାଯାଏ ନାହିଁ । ମାତ୍ର ମହାତ୍ମା ଗାନ୍ଧି ନିଜର ଅଭିନବ ଉପାୟ 'ଅସହଯୋଗ ଆନ୍ଦୋଳନ ଜରିଆରେ' ପ୍ରମାଣ କରିଦେଲେ ଯେ ଅହିଂସା ଉପାୟରେ ଅସମ୍ଭବକୁ ସମ୍ଭବ କରାଯାଇ ପାରେ ଏବଂ ନୈତିକ ବଳ ଦ୍ୱାରା ପ୍ରବଳ ରାଜଶକ୍ତିର ହୃଦୟକୁ ମଧ୍ୟ କିଣାଯାଇପାରେ ।

ବିଭିନ୍ନ ଯୁଗରେ ବିଭିନ୍ନ ଦେଶରେ ବହୁ ରାଜନୈତିକ ନେତା ଓ ବୀର ଜନ୍ମ ଗ୍ରହଣ କରିଛନ୍ତି । ଏମାନେ ସମସ୍ତେ ଦାରୁଣ ରକ୍ତପାତ କରି ଅଥବା ସାମ୍ରାଜ୍ୟ ବିସ୍ତାର କରି କିମ୍ବା ଜନସାଧାରଣଙ୍କ ଉପରେ ଅତ୍ୟାଚାର କରି ନିଜ ନିଜର ଖ୍ୟାତି ଅର୍ଜନ କରି ଯାଇ ଅଛନ୍ତି । ମାତ୍ର ମହାତ୍ମା ଗାନ୍ଧି ଏମାନଙ୍କ ମଧ୍ୟରେ ବ୍ୟତିକ୍ରମ ଥିଲେ । ସେ ସ୍ନେହ ଓ କରୁଣା ବଳରେ ସମସ୍ତଙ୍କ ହୃଦୟକୁ ଜୟ କରିଥିଲେ । ଶତ୍ରୁ ପ୍ରତି ମଧ୍ୟ ପ୍ରେମ ଆଚରଣ କରିବାକୁ ସେ ଉପଦେଶ ଦେଇ ଯାଇ ଅଛନ୍ତି ।

ଭାରତର କୋଟି କୋଟି ଲୋକଙ୍କୁ ବିଦେଶୀ ଶାସନ ଓ ଅତ୍ୟାଚାରରୁ ମୁକ୍ତ କରି ମହାତ୍ମା ଗାନ୍ଧି ଅମର ହୋଇଅଛନ୍ତି । ସେଥିପାଇଁ ତାଙ୍କୁ ଜାତିର ପିତା ଭାବରେ ଆମେ ନମସ୍କାର କରିଥାଉଁ ।



# ସେବା-ବୀର ଡେମିଆନ୍

୧୮୪୧ ମସିହା ଜାନୁୟାରୀ ମାସ ୩ ତାରିଖ ଦିନ ବେଲଜିୟମ୍ ରାଜ୍ୟର ଏକ କ୍ଷୁଦ୍ର ଗ୍ରାମରେ ଜୋଜେଫ ଡେମିଆନଙ୍କର ଜନ୍ମ । ତାଙ୍କର ଗୋଟିଏ ଭାଇ ଥିଲେ । ଭାଇଟି ପାଦ୍ରୀ ହେବା ଉଦ୍ଦେଶ୍ୟରେ ଜନ୍ମସ୍ଥାନଠାରୁ ଦୂରରେ ରହି ଧର୍ମଶାସ୍ତ୍ର ଶିକ୍ଷା କରୁଥିଲେ । ଡେମିଆନ ପିଲାଦିନୁ ପରର ସେବା କରିବାକୁ ଭଲ ପାଉଥିଲେ । ଥରେ ସେ ଭାଇଙ୍କ ପାଖକୁ ଯାଇଥିଲେ । ସେତେବେଳକୁ ତାଙ୍କର ବୟସ ୧୯ ବର୍ଷ ମାତ୍ର । ଡେମିଆନଙ୍କ ଭାଇ ଶିକ୍ଷାଲାଭ ପରେ ଦକ୍ଷିଣ ସାଗରୀୟ ଦ୍ୱୀପପୁଞ୍ଜରେ ପାଦ୍ରୀ କାର୍ଯ୍ୟ କରିବେ ବୋଲି ସ୍ଥିର କରିଥିଲେ । ମାତ୍ର ତାଙ୍କର ଶରୀର ଅସୁସ୍ଥ ହେବାରୁ ସେ ଯାଇ ପାରିଲେ ନାହିଁ । ତହୁଁ ଡେମିଆନ ତାଙ୍କ ପରିବର୍ତ୍ତେ ଦକ୍ଷିଣ ସାଗରୀୟ ଦ୍ୱୀପପୁଞ୍ଜକୁ ଯାତ୍ରା କଲେ । ସେଠାରେ ସେ ଗୋଟିଏ ଦ୍ୱୀପରେ ଦଶବର୍ଷ ପର୍ଯ୍ୟନ୍ତ ପାଦ୍ରୀ ଭାବରେ ଜୀବନ କଟାଇଲେ ।

ଦିନେ ପ୍ରଧାନ ଧର୍ମଯାଜକ ବକ୍ତୃତା ଦେଉଁ ଦେଉଁ କହିଲେ— ଏହି ଦ୍ୱୀପପୁଞ୍ଜ ମଧ୍ୟରେ ମଲୋକାଇ ବୋଲି ଗୋଟିଏ ଦ୍ୱୀପ ଅଛି । ଦ୍ୱୀପଟିରେ ଅନେକଗୁଡ଼ିଏ କୁଷ୍ଠରୋଗୀ ଅଛନ୍ତି । ସେମାନଙ୍କର ଦୁଃଖ ଦୁର୍ଦ୍ଦଶାର ସୀମା ନାହିଁ । ଘାସ ଛପର କୁଡ଼ିଆରେ ସେମାନଙ୍କୁ ରହିବାକୁ ପଡ଼େ । ବର୍ଷାଦିନେ କୁଡ଼ିଆ ଭିତରେ ବର୍ଷାପାଣି ପଡ଼ୁଥାଏ । ରୋଗୀମାନେ ଯାହା ପାଆନ୍ତି ତାହା ଖାଆନ୍ତି । ପିଇବା ପାଇଁ ଭଲ ପାଣି ଟିକିଏ ମଧ୍ୟ ପାଇ ପାରନ୍ତି ନାହିଁ । ଏହି ଦ୍ୱୀପରେ ଏକ ପ୍ରକାର ଗଛରୁ ମଦ ତିଆରି ହୁଏ । ଅନେକ ରୋଗୀ ଯନ୍ତ୍ରଣା ଭୁଲି ଯିବାକୁ

ସେହି ମଦ ପିଅନ୍ତି । ଏହିପରି ଦୁଃଖରେ ସେମାନଙ୍କର ଦିନ କଟେ । କେହି ସେମାନଙ୍କର ଭଲ ମନ୍ଦ ବୁଝିବାକୁ ଚେଷ୍ଟା କରେ ନାହିଁ । ରୋଗୀ ମୃତ୍ୟୁ ପର୍ଯ୍ୟନ୍ତ ଏହିପରି ଦୁଃଖ କଷ୍ଟ ଭୋଗୁଥାଏ ।

ସେ କାଳରେ କୁଷ୍ଠରୋଗର ଚିକିତ୍ସା ପାଇଁ କୌଣସି ଔଷଧ ଜଣା ନ ଥିଲା । ପୁଣି ଜଣକୁ ଏହି ରୋଗ ହେଲେ ତା ସହିତ ଚଳୁଥିବା ଲୋକର ଦେହକୁ ତାହା ଡିଏଁ । ତେଣୁ କାହାରିକୁ କୁଷ୍ଠରୋଗ ହେବାର ଜଣା ପଡ଼ିଲାମାତ୍ରେ ତାର ବନ୍ଧୁ ବାନ୍ଧବମାନେ ତାକୁ ଘୃଣା କରନ୍ତି । ଅଧିକାଂଶ କୁଷ୍ଠରୋଗୀଙ୍କୁ ଏହି ମଲୋକାଇ ଦ୍ୱୀପକୁ ପଠାଇ ଦିଆଯାଉଥିଲା । ସେହି ଦ୍ୱୀପରେ ମୃତ୍ୟୁପର୍ଯ୍ୟନ୍ତ ସେମାନେ ରହୁଥିଲେ ।

ଧର୍ମଯାଜକଙ୍କର କଥା ଶୁଣି ଡେମିଆନଙ୍କ ହୃଦୟରେ ଗୋଟିଏ ନୂତନ ଭାବ ଜାଗିଲା । ସେ ଏହି ଦୀନହୀନ କୁଷ୍ଠରୋଗୀମାନଙ୍କର ସେବା କରିବାକୁ ମନେ ମନେ ସ୍ଥିର କରି ଧର୍ମଯାଜକଙ୍କୁ କହିଲେ, "ମୋ କାର୍ଯ୍ୟରେ ଅନ୍ୟ କାହାରିକୁ ନିଯୁକ୍ତ କରି ମୋତେ ସେହି ଦ୍ୱୀପକୁ ଯିବାପାଇଁ ଅନୁମତି ଦିଅନ୍ତୁ । ମୁଁ କୁଷ୍ଠରୋଗୀମାନଙ୍କର ସେବା କରି ଜୀବନକୁ ଧନ୍ୟ କରିବି ।" ଧର୍ମଯାଜକ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ମଲୋକାଇ ଦ୍ୱୀପଟି ହାୱାଇ ଦ୍ୱୀପପୁଞ୍ଜ ମଧ୍ୟରୁ ଗୋଟିଏ । କପ୍ତାନ କୁକ୍ ସାହେବ ଏହାକୁ ୧୭୭୮ ଖ୍ରୀଷ୍ଟାବ୍ଦରେ ଆବିଷ୍କାର କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଆଡ଼କୁ କୁଷ୍ଠରୋଗ ପ୍ରଥମେ ଏଠାରେ ଦେଖା ଦେଇଥିଲା । ନିବାରଣର କୌଣସି ଉପାୟ ଜଣା ନ ଥିବାରୁ ଏହି ରୋଗ ପ୍ରବଳ ଭାବରେ ବ୍ୟାପିଲା । ଲୋକେ ସ୍ଥିର କଲେ ଯେ ସବୁ କୁଷ୍ଠରୋଗୀଙ୍କୁ ଗୋଟିଏ ଦ୍ୱୀପରେ ରଖିଲେ ରୋଗ ସେତେ ବ୍ୟାପି ପାରିବ ନାହିଁ । ମଲୋକାଇ ଦ୍ୱୀପ ଏଥିପାଇଁ

ସ୍ଥିର କରାଗଲା । କୌଣସି କୁଷ୍ଠରୋଗୀକୁ ଏହି ଦ୍ୱୀପକୁ ପଠାଇବା ହେଲେ ତାର କୁଟୁମ୍ବ ଓ ବନ୍ଧୁବାନ୍ଧବଙ୍କ ମଧ୍ୟରେ ହାହାକାର ପଡ଼ିଯାଏ । କେହି କେହି ରୋଗୀକୁ ଲୁଚାଇବାକୁ ଚେଷ୍ଟା କରନ୍ତି ; ମାତ୍ର ଅନ୍ୟମାନେ ତାର ସନ୍ଧାନ ନେଇ ବଳପୂର୍ବକ ତାକୁ ଏହି ଦ୍ୱୀପକୁ ପଠାଇ ଦିଅନ୍ତି । ସେହିଠାରେ ହିଁ ତାର ଦୁଃଖମୟ ଜୀବନ ଶେଷ ହୁଏ

ଥରେ ପଚିଶଜଣ କୁଷ୍ଠରୋଗୀଙ୍କୁ ଧରି ଗୋଟିଏ ନୌକା ମଲୋକାଇ ଯାଉଥିଲା । ଡେମିଆନ୍ ସେମାନଙ୍କ ସଙ୍ଗରେ ସେହି ଦ୍ୱୀପକୁ ଯାତ୍ରା କଲେ ।

ସେତେ ବେଳକୁ ତାଙ୍କର ବୟସ ୩୨ ବର୍ଷ ମାତ୍ର । ଏହି ବୟସରେ ଅଧିକାଂଶ ଲୋକ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହି ଜୀବନକୁ ଉପଭୋଗ କରିବାକୁ ଚାହାନ୍ତି ; ମାତ୍ର ଡେମିଆନ ସୁଖ ଭୋଗରେ ଜଳାଞ୍ଜଳି ଦେଇ ଘାନହୀନ କୁଷ୍ଠରୋଗୀଙ୍କ ସେବାରେ ମନପ୍ରାଣ ଢାଳି ଦେଲେ । ନୌକା ମଲୋକାଇ ଦ୍ୱୀପରେ ଲାଗିଲାକ୍ଷଣି ଶତ ଶତ କୁଷ୍ଠରୋଗୀ ସେଠାରେ ଉପସ୍ଥିତ ହେଲେ । ସେ ଦୃଶ୍ୟ ଅତି ବୀଭତ୍ସ । ସମସ୍ତଙ୍କର ବସ୍ତ୍ର ମଳିନ, ଶତଗ୍ରନ୍ଥିଯୁକ୍ତ । ଅନେକଙ୍କର ଦେହର କ୍ଷତରୁ ପୂଜ ରକ୍ତ ବହୁଛି, ସେଥିରେ ମାଛିମାନେ ବସୁଛନ୍ତି । କିଏ ଅନ୍ଧ, କିଏ କଣା, କାହାର ଆଙ୍ଗୁଠି ଛିଡ଼ି ପଡ଼ୁଛି, କାହାର ପାଦରୁ ଅଧେ ନାହିଁ । ମନୁଷ୍ୟର ଯେ ଏପରି ଦଶା ହୋଇପାରେ ତାହା ଡେମିଆନ ଆଗରୁ କଳ୍ପନା କରିପାରି ନ ଥିଲେ । ଏ ପ୍ରକାର ଦୃଶ୍ୟ ଦେଖି ତାଙ୍କ ଆଖିରୁ ଲୁହଧାର ବହିଗଲା ।

ଡେମିଆନଙ୍କ ରହିବା ପାଇଁ କିଛି ବ୍ୟବସ୍ଥା ନ ଥିଲା । ସେ ଦୁଃଖ ଓ ଚିନ୍ତାରେ ପ୍ରଥମ ରାତିଟି ଗୋଟିଏ ଗଛମୂଳେ କଟାଇଲେ ।

ପରଦିନ ସକାଳେ ସେ ଦ୍ୱୀପରେ ବୁଲି ଦେଖିଲେ ଯେ ସର୍ବତ୍ର ମଇଳ ପରିପୂର୍ଣ୍ଣ । ଜଳର ଅଭାବରୁ ରୋଗୀମାନେ ନିଜକୁ ସଫା ରଖି ପାରନ୍ତି ନାହିଁ । ସାବୁନ ପ୍ରଭୃତିର ଦେଖା ନ ଥାଏ । କୁଡ଼ିଆଗୁଡ଼ିକରେ ବାୟୁ ଓ ଆଲୋକ ପ୍ରବେଶ କରିବାର ସୁବିଧା ନାହିଁ । ରୋଗୀମାନେ ଏପ୍ରକାର ଗୃହରେ ଏପରି ଅବସ୍ଥା ମଧ୍ୟରେ ରହି ଜୀବନକୁ ଆହୁରି ଦୁଃଖମୟ କରି ପକାଉଥିଲେ ।

ଡେମିଆନ ଲୋକଙ୍କର ଜୀବନଯାତ୍ରା ପ୍ରଣାଳୀ ଜାଣିବା ପାଇଁ ଗୋଟିକପରେ ଗୋଟିଏ କୁଡ଼ିଆ ଭିତରକୁ ଗଲେ । ସଭିଙ୍କର ଅବସ୍ଥା ସମାନ, ମଇଳା ଦୁର୍ଗନ୍ଧ ପରିପୂର୍ଣ୍ଣ, ସାକ୍ଷାତ ଯମପୁରୀ । ଡେମିଆନ କୌଣସି କୁଡ଼ିଆରେ ମିନିଟିଏ ସୁଦ୍ଧା ରହିବାକୁ କଷ୍ଟବୋଧ କଲେ । ସେ ସ୍ଥିର କଲେ ଯେ ହତଭାଗ୍ୟ କୁଷ୍ଠରୋଗୀମାନଙ୍କର ପ୍ରଥମ ଓ ପ୍ରଧାନ ଅଭାବ ହେଉଛି—ପରିଷ୍କୃତ ଜଳ ।

ରୋଗୀମାନଙ୍କୁ ବହୁ ଦୂରରୁ ମାଠିଆରେ ପାଣି ଆଣିବାକୁ ପଡ଼ୁଥିଲା । ଅଧିକାଂଶ ରୋଗୀ ଦୁର୍ବଳ । ସେମାନେ ଏତେ ଦୂରରୁ ପାଣି ଆଣିବାକୁ କଷ୍ଟବୋଧ କରୁଥିଲେ । କେବଳ ପିଇବା ପାଇଁ କିଛି ଆଣିବାକୁ ବାଧ୍ୟ ହେଉଥିଲେ । ଡେମିଆନ ଦ୍ୱୀପଯାକ ବୁଲି ଦେଖିଲେ ଯେ ଦୂରରେ ପାହାଡ଼ ଭିତରେ ଗୋଟିଏ ପ୍ରାକୃତିକ ଝରଣା ଅଛି । ସେଥିରୁ ଯଥେଷ୍ଟ ସଫା ପାଣି ମିଳି ପାରିବ ; କିନ୍ତୁ ଏତେ ଦୂରରୁ କିପରି ଗ୍ରାମମାନଙ୍କୁ ପାଣି ଅଣାଯିବ ?

ଡେମିଆନ ଗୁଡ଼ିଏ ପାଇପ ଅଣାଇ ସବଳ ରୋଗୀମାନଙ୍କ ସାହାଯ୍ୟରେ ଝରଣାଠାରୁ ଗ୍ରାମପର୍ଯ୍ୟନ୍ତ ପାଣି ଆଣିବାର ବ୍ୟବସ୍ଥା କଲେ । ଏହା ଫଳରେ ରୋଗୀମାନେ ପିଇବା, ଗାଧୋଇବା, ଧୁଆ-ଧୋଇ କରିବା ପାଇଁ ଯଥେଷ୍ଟ ପାଣି ପାଇପାରିଲେ । କିନ୍ତୁ

ଏତକରେ ଡେମିଆନଙ୍କ କାର୍ଯ୍ୟ ଶେଷ ହେଲା ନାହିଁ । ଏ ତ ଆରମ୍ଭ ମାତ୍ର । ସେ ଦେଖିଲେ ଯେ ପ୍ରାୟ ସବୁ ରୋଗୀ ମଦ୍ୟ ପିଇବାରେ ଅଭ୍ୟସ୍ତ । ମଲୋକାଇ ଦ୍ୱୀପରେ 'କି' ବୋଲି ଏକ ଜାତିର ଗଛ ବହୁ ପରିମାଣରେ ଜନ୍ମେ । ଏହାର ମୂଳରୁ ଏକପ୍ରକାର ମଦ ପ୍ରସ୍ତୁତ ହୁଏ । ସେହି ମଦ ପିଇଲେ ଲୋକ ଭୟଙ୍କର ମାତାଲ ହୋଇ ଉଠେ । ଅବଶ୍ୟ ଏ ପ୍ରକାର ମଦ ପ୍ରସ୍ତୁତ କରିବା ଆଇନ ଦ୍ୱାରା ନିଷିଦ୍ଧ ଥିଲା । କିନ୍ତୁ ଲୋକମାନେ ଏହି ଆଇନ ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ । ପୁଣି କୁଷ୍ଠରୋଗୀ ପରିପୂର୍ଣ୍ଣ ଏହି ଦ୍ୱୀପରେ କିଏ କଅଣ କଲା, ତାହା ଦେଖିବା ପାଇଁ ବାହାରର ଲୋକ ଆଗ୍ରହୀ ନ ଥିଲେ ।

ଡେମିଆନ ମଦ୍ୟ ପାନ ବିରୋଧରେ ଲୋକଙ୍କୁ ବୁଝାଇଲେ, ମଦ ଭାଟି ବନ୍ଦ କରିବାକୁ ପ୍ରବର୍ତ୍ତାଇଲେ । ପ୍ରଥମେ ଡେମିଆନ ଏଥିପାଇଁ ବଡ଼ ଅପ୍ରିୟ ହୋଇ ପଡ଼ିଥିଲେ ; କିନ୍ତୁ କ୍ରମଶଃ ଲୋକେ ତାଙ୍କର ଉଦ୍ଦେଶ୍ୟ ବୁଝିପାରିଲେ ଓ ରୋଗୀମାନଙ୍କ ମଧ୍ୟରୁ ମଦ୍ୟପାନ ଲୋପ ପାଇଗଲା ।

ଥରେ ଏହି ଦ୍ୱୀପରେ ପ୍ରଚଣ୍ଡ ଝଡ଼ ହେଲା । ଯେଉଁ କୁଡ଼ିଆ-ଗୁଡ଼ିକ ରୋଗୀମାନଙ୍କୁ ସାମାନ୍ୟ ଆଶ୍ରୟ ଦେଉଥିଲା, ସେଗୁଡ଼ିକ ଭାଙ୍ଗି ମାଟିରେ ମିଶିଗଲା । ଖରା ବର୍ଷାରୁ ମୁଣ୍ଡକୁ ରକ୍ଷା କରିବାକୁ ସୁଦ୍ଧା ଉପାୟ ରହିଲା ନାହିଁ । ଡେମିଆନ ବାହାର ଦେଶମାନଙ୍କରୁ ସାହାଯ୍ୟ ମାଗିଲେ ଏବଂ ଯାହା ସାହାଯ୍ୟ ମିଳିଲା ସେଥିରେ ଘର ତିଆରିର ଉପକରଣ ସଂଗ୍ରହ କଲେ । ସେ ସବଳ ରୋଗୀଙ୍କ ଦ୍ୱାରା ଘର ତିଆରି କରାଇଲେ । ଏ ଘରଗୁଡ଼ିକରେ ବାୟୁ ଓ ଆଲୋକ ଯିବା ଆସିବାର ଉପାୟ କରାଗଲା । ଲୋକେ ଭଲ ଘର ତିଆରିବାର ଉପାୟ ମଧ୍ୟ ଶିଖିଗଲେ । ଝଡ଼ ଯୋଗୁଁ ହିଁ ଲୋକଙ୍କର ଅବସ୍ଥାରେ ଉନ୍ନତ

ହୋଇଥିଲା କଷ୍ଟରେ ଚଳେ । ହାଓଆଇର ରଜା ଓ ରାଣୀ ଡେମିଆନଙ୍କୁ ଏହି କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ଏଥିପୂର୍ବରୁ ଏ ଦ୍ୱୀପର ଲୋକେ ଆଳସ୍ୟରେ ସମସ୍ତ କଟାଉଥିଲେ । ଆପଣା ଆପଣା ଭିତରେ କଳି ସେମାନଙ୍କର ପ୍ରତିଦିନର କାମ ଥିଲା । ଡେମିଆନ ପିଲାମାନଙ୍କୁ କାଠକାମ ଶିଖାଇଲେ । ସେ ନିଜ ହାତରେ କାମ କରି ପିଲାମାନଙ୍କୁ ସେହିପରି କରିବାକୁ କହନ୍ତି । ଏହିପରି ସେ ଲୋକଙ୍କ ରହିବା ଘର, ଗୋଟିଏ ଡାକ୍ତରଖାନା, ଗୋଟିଏ ଗିର୍ଜାଘର, ଗୋଟିଏ ସ୍କୁଲଘର ଓ ଆଉ କେତେକ ସାଧାରଣ ବ୍ୟବହାର୍ଯ୍ୟ ଘର ତିଆରି କରାଇଲେ । ଡେମିଆନ ସମସ୍ତଙ୍କ ସହିତ ମିଳିମିଶି, ସେମାନଙ୍କର ସୁଖ ଦୁଃଖରେ ଭାଗୀ ହୋଇ ଚଳୁଥିଲେ । ସେ ନିଜ ହାତରେ ରୋଗୀମାନଙ୍କର ଘାଆକୁ ଧୋଇ ମଲମ ଲଗାଇ ଦେଉଥିଲେ, ପଟି ବାନ୍ଧୁଥିଲେ ।

ଡେମିଆନ ଯେ କେବଳ ଲୋକଙ୍କ ଦେହର ଯତ୍ନ ନେଉଥିଲେ ତାହା ନୁହେଁ, ଲୋକଙ୍କର ଧର୍ମଭାବ ବଢ଼ାଇବା ଓ ସେମାନଙ୍କ ମନରେ ଈଶ୍ୱରବିଶ୍ୱାସ ଦୃଢ଼ କରିବା ତାଙ୍କର ଲକ୍ଷ୍ୟ ଥିଲା । ଡେମିଆନଙ୍କ ମଧୁର ଉପଦେଶ ଫଳରେ ଲୋକମାନେ ଜୀବନକୁ ଘୃଣ୍ୟ ମନେ ନ କରି ଈଶ୍ୱରବିଶ୍ୱାସୀ ହେଲେ ଓ ଦୁଃଖକଷ୍ଟକୁ ସହ୍ୟ କରିବାକୁ ଶକ୍ତି ପାଇଲେ । ଏହିପରି ଅନବରତ ରୋଗୀ ସେବା କରି ଡେମିଆନ ଏଗାର ବର୍ଷ କଟାଇଲେ ।

ସେତେବେଳକୁ ତାଙ୍କର ବୟସ ୪୩ ବର୍ଷ, ମାତ୍ର ତାଙ୍କଠାରେ ଯୁବକସୁଲଭ ଉତ୍ସାହ ଦେଖା ଯାଉଥିଲା । ଯେ କୌଣସି କଠିନ କାର୍ଯ୍ୟ କରିବାକୁ ସେ ପଛଘୁଞ୍ଚା ଦେଉ ନ ଥିଲେ । ସେ ସ୍ୱେଚ୍ଛାରେ ନିର୍ବାସନକୁ ବରଣ କରି ନେଇଥିଲେ ; ରୋଗୀର ସେବା ଥିଲା ତାଙ୍କ ଜୀବନର ବ୍ରତ । ଏହି ବ୍ରତ ପାଳନ କରିବାକୁ ସେ ଦୃଢ଼ପ୍ରତିଜ୍ଞ ଥିଲେ ।

ଧନେ ଫୈବାରୁ କିଛି ତତଲା ପାଣି ତାଙ୍କ ପାଦ ଉପରେ ପଡ଼ିଗଲା ; ମାତ୍ର ସେ କିଛି କଷ୍ଟ ଅନୁଭବ କଲେ ନାହିଁ । ସେ ବିସ୍ମିତ ହୋଇ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କଲେ । ଡାକ୍ତର ତାଙ୍କୁ ପରୀକ୍ଷା କରି କହିଲେ—"ଆପଣଙ୍କୁ କହିବାକୁ ମୋର ଜିଭ ଲେଉଟୁ ନାହିଁ । ଭଗବାନ୍ କଅଣ ନ କଲେ ! ଆପଣଙ୍କ ଦେହରେ ......।" ଡାକ୍ତର ଆଉ କିଛି କହି ପାରିଲେ ନାହିଁ ।

ଡେମିଆନ ଟିକିଏ ହେଲେ ବିଚଳିତ ନ ହୋଇ ଧୀରଭାବରେ କହିଲେ, "ଡାକ୍ତର ବାବୁ, ମୁଁ ବୁଝିଛି । ଏବେ ମୁଁ କୁଷ୍ଠରୋଗୀ-ମାନଙ୍କ ମଧ୍ୟରୁ ଜଣେ । କେତେଦିନ ହେଲା ମୋର ସେହି ସନ୍ଦେହ ହେଉଥିଲା ।"

କୁଷ୍ଠରୋଗରେ ଆକ୍ରାନ୍ତ ହେବାପରେ ଡେମିଆନ ମଲୋକାଇ ଦ୍ୱୀପ ମଧ୍ୟରେ ଆବଦ୍ଧ ହୋଇ ରହିଲେ । ଅନ୍ୟ କୌଣସି ଦ୍ୱୀପକୁ ଯିବା ଆସିବା କରିବା ପାଇଁ ତାଙ୍କୁ ଆଉ ଅନୁମତି ଦିଆଗଲା ନାହିଁ । କିନ୍ତୁ ସେ ରୋଗୀମାନଙ୍କର ସେବା କାର୍ଯ୍ୟରୁ ବିରତ ହେଲେ ନାହିଁ । ଥରେ ଜଣେ ଦର୍ଶକ ମଲୋକାଇ ଯାଇଥିଲେ । ସେ ଡେମିଆନଙ୍କୁ ଦେଖି କହିଥିଲେ, "ଆପଣ ଏ ଦ୍ୱୀପରୁ ଚାଲି ଯାଆନ୍ତୁ; ରୋଗମୁକ୍ତ ହୋଇପାରିବେ ।" ଏହା ଶୁଣି ଡେମିଆନ ଉତ୍ତର କଲେ, "ମୋର କୁଷ୍ଠରୋଗାକ୍ରାନ୍ତ ଭାଇମାନଙ୍କୁ ଛାଡ଼ି ମୁଁ ସୁସ୍ଥ ହେବାକୁ ଇଚ୍ଛା କରେ ନାହିଁ । ମୋର କାର୍ଯ୍ୟ ମୁଁ କରିବି ।"

ଡେମିଆନଙ୍କ ସମ୍ବନ୍ଧରେ ଆଉ ଜଣେ ଦର୍ଶକ ଲେଖିଛନ୍ତି— "ଡେମିଆନଙ୍କୁ ଛଅବର୍ଷ ହେଲା କୁଷ୍ଠରୋଗ ହେଲାଣି । ତାଙ୍କର ଦେହ ପୂର୍ବପରି ସବଳ ଦିଶୁଅଛି । ତାଙ୍କର କୁଞ୍ଚକୁଞ୍ଚିଆ ବାଳ ଓ ଦାଢ଼ି ସାମାନ୍ୟ ଧଳା ହୋଇ ଆସିଲାଣି । ରୋଗହେତୁ ସେ ବିକଳାଙ୍ଗ

ହୋଇ ପଡ଼ିଛନ୍ତି । ତାଙ୍କ କପାଳ ଫୁଲି ଯାଇଛି, ନାକ ଦବିଯାଇଛି । କାନ ଖୁବ ମୋଟ ହୋଇଯାଇଛି । ତାଙ୍କ ଦେହର ଅନେକ ସ୍ଥାନରେ ରୋଗର ଚିହ୍ନ ଦେଖାଯାଉଛି ।”

ଡେମିଅନ ସ୍ୱେଚ୍ଛାରେ ମଲୋକାଇ ଯାଇଥିଲେ । ଏଥିରେ ଯେ ବିପଦ, ତାହା ତାଙ୍କୁ ଅଜଣା ନ ଥିଲା । ବରଂ ତାଙ୍କୁ କେତେ-ବେଳେ ହେଲେ କୁଷ୍ଠ ରୋଗ ଆକ୍ରମଣ କରିବ, ଏହା ସେ ନିଶ୍ଚିତ-ରୂପେ ଜାଣିଥିଲେ । ଏବେ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ସେ ଭୀତ ବା ଚକିତ ହେଲେ ନାହିଁ; ଧୈର୍ଯ୍ୟ ସହକାରେ ରୋଗ ଯନ୍ତ୍ରଣା ସହିବାକୁ ଲାଗିଲେ ।

୧୮୮୯ ମସିହାର ଫେବୃୟାରୀ ମାସରେ ଡେମିଆନ୍ ତାଙ୍କର ବନ୍ଧୁମାନଙ୍କ ନିକଟକୁ ପତ୍ର ଲେଖିଥିଲେ—“ମୋର ରୋଗ ପ୍ରବଳ-ଭାବରେ ବୃଦ୍ଧି ପାଉଛି । ଇହ ଜନ୍ମରେ ତୁମ୍ଭମାନଙ୍କ ସଙ୍ଗେ ଭେଟ ହେବାର ଆଉ ଆଶା ନାହିଁ, କିନ୍ତୁ ପର ଜନ୍ମରେ ନିଶ୍ଚୟ ଦେଖା ହେବ ।”

ଡେମିଆନ ଗୋଟିଏ କୁଡ଼ିଆରେ ପଡ଼ିଥାନ୍ତି । ପାଖଘରେ ଜଣେ ପାଦ୍ରୀ ବାଇବେଲରୁ ପଢ଼ିଲେ—“ମୁଁ ଜଣେ ଉତ୍ତମ ମେଷ-ପାଳକ; ମୋର ମେଷମାନଙ୍କ ପାଇଁ ମୋର ଜୀବନ ଦେଉଛି ।”

ଯୀଶୁ ଖ୍ରୀଷ୍ଟଙ୍କର ଏହି ଉକ୍ତିଟି ଡେମିଆନଙ୍କ ଜୀବନରେ ସଫଳ ହେଲା । ୧୮୮୯ ମସିହା ଅପ୍ରେଲ୍ ମାସ ୧୫ ତାରିଖରେ ସେ ଇହଧାମ ତ୍ୟାଗ କଲେ ।

ରୋଗୀର ସେବାରେ ଜୀବନକୁ ତିଳ ତିଳ କରି ଦେଇ ଡେମିଆନ୍ ଧନ୍ୟ ହୋଇଥିଲେ । ସ୍ୱାର୍ଥ ତାଙ୍କ ଜୀବନକୁ ଛୁଇଁ ପାରି ନ ଥିଲା ।

ସେବା କାର୍ଯ୍ୟରେ ସେ ବ୍ୟୟ କରିବାକୁ ବହୁତ ଧନ ସାହାଯ୍ୟ ପାଇଥିଲେ । ମାତ୍ର ସେଥିରୁ ସେ କିଛିମାତ୍ର ନିଜର ସୁଖ ପାଇଁ ବ୍ୟୟ କରୁ ନ ଥିଲେ । ମୃତ୍ୟୁ ବେଳକୁ ଦେଖାଗଲା ଯେ ତାଙ୍କର ପିନ୍ଧିବା ଲୁଗା ଛଡ଼ା ଆଉ କିଛି ନ ଥିଲା ।

ମଲୋକାଇ ଦ୍ୱୀପରେ ପହଞ୍ଚିବା ଦିନ ସେ ଯେଉଁ ଗଛ ମୂଳରେ ଆଶ୍ରୟ ନେଇଥିଲେ ସେହି ଗଛତଳେ ତାଙ୍କୁ କବର ଦିଆଗଲା ।

ଡେମିଆନଙ୍କ ସେବାର ଆଦର୍ଶ ପ୍ରତ୍ୟେକର ଅନୁକରଣୀୟ ।

———

# ଆଦର୍ଶ ଶିକ୍ଷକ ଆର୍ଣ୍ଣୋଲ୍ଡ଼

ଆଜି ଆମ ଦେଶରେ ଯେପରି ଶିକ୍ଷକମାନେ ଅବହେଳିତ, ଆଗ କାଳରେ ପୃଥିବୀର ପ୍ରାୟ ସବୁ ଦେଶରେ ଶିକ୍ଷକମାନେ ତହିଁ ଅଧିକେ ସେହିପରି ଅବହେଳିତଭାବରେ ଥିଲେ । ସେମାନଙ୍କର ସେପରି ଉଚ୍ଚ ଶିକ୍ଷା ନ ଥିଲା । ପିଲାମାନଙ୍କୁ କିପରି ଶିକ୍ଷା ଦେଲେ ସେମାନେ ଭଲ ମଣିଷ ହେବେ ଶିକ୍ଷକମାନଙ୍କୁ ତାହା ଜଣା ନ ଥିଲା । କେବଳ ମାଡ଼ ଦେଇ ପିଲାମାନଙ୍କୁ ଗୁଡ଼ାଏ ବିଷୟ ମୁଖସ୍ଥ କରାଇବା ସେମାନଙ୍କର କାମ ଥିଲା ।

ଉପଯୁକ୍ତ ଶିକ୍ଷକ କିପରି ପ୍ରକୃତ ମନୁଷ୍ୟ ଗଢ଼ି ଦେଶର ଉପକାର କରି ପାରନ୍ତି, ସେହିପରି ଜଣେ ଶିକ୍ଷକଙ୍କର କଥା ଏଠାରେ କୁହାଯାଉଅଛି । ଏହି ଶିକ୍ଷକଙ୍କର ନାମ ହେଉଛି ଆର୍ଣ୍ଣୋଲ୍ଡ଼ ।

ଇଂଲଣ୍ଡର ଦକ୍ଷିଣରେ ଓ୍ୱାଇଟ୍ ଦ୍ୱୀପ । ଏହି ଦ୍ୱୀପରେ ୧୭୯୫ ମସିହା ଜୁନମାସ ୧୩ ତାରିଖରେ ଗୋଟିଏ ଶିଶୁର ଜନ୍ମ ହେଲା । ପିତା ମାତା ପିଲାଟିର ନାମ ଦେଲେ ଟମାସ୍ । ସେମାନଙ୍କର କୌଳିକ ଉପାଧି ହେଉଛି ଆର୍ଣ୍ଣୋଲ୍ଡ଼ । ତେଣୁ ପିଲାଟିର ପୂରା ନାମ ହେଲା ଟମାସ୍ ଆର୍ଣ୍ଣୋଲ୍ଡ଼ । ପିଲାଦିନେ ଟମାସ୍‌ଙ୍କର ଗୋଟିଏ ବଦଭ୍ୟାସ ଅଭ୍ୟାସ ଥିଲା । ସେ ଅନେକ ବେଳ ଯାଏ ଶୋଉଥିଲେ । ଅବଶ୍ୟ ପିଲାମାନେ ବଡ଼ ମଣିଷଙ୍କଠାରୁ ଅଧିକ ଶୁଅନ୍ତି ଓ ଶୋଇବା ମଧ୍ୟ ଉଚିତ । କିନ୍ତୁ ଟମାସ୍ ଏପରି ଶୋଉଥିଲେ ଯେ ଦିନ ପହରକ ଯାଏ ଉଠୁ ନ ଥିଲେ । ତାଙ୍କୁ ନିଦରୁ ଉଠାଇବା ପାଇଁ ବାପା ମାଆଙ୍କୁ ଅନେକ କଷ୍ଟ ସହିବାକୁ ହେଉଥିଲା ।

୫ମାସକୁ ଛଅବର୍ଷ ବେଳେ ବାପାଙ୍କର ପରଲୋକ ହୋଇଗଲା । ବିଧବା ମାଆ ତାଙ୍କୁ ପାଳିଲେ । ବାରବର୍ଷ ବୟସରେ ସେ ଉଇଞ୍ଚେଷ୍ଟରରେ ଥିବା ବାଳକ ବିଦ୍ୟାଳୟରେ ନାମ ଲେଖାଇଲେ । ସେଠାର ପଢ଼ା ଶେଷକରି ସେ ଇଂଲଣ୍ଡର ଅକ୍ସଫୋର୍ଡ଼ କଲେଜରେ ପ୍ରବେଶ କଲେ । କିଛିକାଳ ପରେ ସେ ମିଡ଼ିଲ୍‌ସେକ୍‌ସର ଗୋଟିଏ ଗ୍ରାମରେ ବସବାସ କରି ଧର୍ମଯାଜକ ପଦରେ ନିଯୁକ୍ତ ହେଲେ । ଧର୍ମଯାଜକ କାର୍ଯ୍ୟ ସଙ୍ଗେ ସେ କେତେକ ବାଳକଙ୍କୁ ପଢ଼ାରେ ମଧ୍ଯ ସାହାଯ୍ୟ କରୁଥିଲେ । ପିଲାଙ୍କୁ ପଢ଼ାଇବା ଦ୍ୱାରା ତାଙ୍କର କିଛି ଆର୍ଥିକ ଲାଭ ନ ଥିଲା ; ମାତ୍ର ଏଥିରୁ ସେ ଆନନ୍ଦ ପାଉଥିଲେ ।

ବୟସ ଦୃଷ୍ଟିରେ ଦେଖିବାକୁ ଗଲେ ସେତେବେଳକୁ ସେ ଥିଲେ ଜଣେ ବଡ଼ ଯୁବ ମାତ୍ର । କିନ୍ତୁ ପିଲାମାନଙ୍କୁ ପଢ଼ାଇଲା ବେଳେ ତାଙ୍କ ଆନନ୍ଦର ସୀମା ରହୁ ନ ଥିଲା । ସେ ପିଲାଙ୍କର ଖାଲି ପଢ଼ା କଥା ବୁଝୁ ନ ଥିଲେ । ସାଙ୍ଗସାଥିପରି ସେ ପିଲାମାନଙ୍କ ସାଥିରେ ଚଳୁଥିଲେ । ଗାଧୋଇବା, ବୁଲିବା, ଖେଳିବା, ପହଁରିବା ପ୍ରଭୃତିରେ ମଧ୍ଯ ସେ ପିଲାମାନଙ୍କ ସଙ୍ଗେ ଯୋଗ ଦେଉଥିଲେ । ଏହା ଫଳରେ ସେ ପିଲାମାନଙ୍କର ଆଦରର ପାତ୍ର ହୋଇଥିଲେ ।

ଏହି ସମୟରେ ତାଙ୍କ ଜୀବନର ଗତି ବିଚିତ୍ର ଭାବରେ ପରିବର୍ତ୍ତିତ ହୋଇଥିଲା ।

ରଗ୍‌ବି ସ୍କୁଲଟି ଖାଲି ଇଂଲଣ୍ଡରେ କାହିଁକି, ସାରା ପୃଥିବୀରେ ଗୋଟିଏ ଉତ୍କୃଷ୍ଟ ସ୍କୁଲ ବୋଲି ଖ୍ୟାତି ଲାଭ କରିଥିଲା । ସେହି ସ୍କୁଲର ହେଡ଼ମାଷ୍ଟର ପଦ ଖାଲି ହେଲା । ଆର୍ଣ୍ଣଓଲ୍‌ଡ଼ ଏହି ପଦ ପାଇଁ ପ୍ରାର୍ଥୀ ହେଲେ ଏବଂ ନିଯୁକ୍ତି ମଧ୍ଯ ପାଇଲେ । ସେ ଭାବିଲେ ଯେ ଏହି କାର୍ଯ୍ୟରେ ସେ ନିଜ ଜୀବନର ଉଦ୍ଦେଶ୍ୟ ସଫଳ କରି ପାରିବେ ।

ମାତ୍ର ୩୩ ବର୍ଷ ବୟସରେ ଆର୍ଣ୍ଣୋଲ୍ଡ ହେଡ଼ମାଷ୍ଟର ଭାବରେ ରଗ୍‌ବି ସ୍କୁଲ୍‌ରେ ଯୋଗ ଦେଲେ ।

ସେ କାଳରେ ପିଲାମାନଙ୍କୁ ବିଦ୍ୟାଳୟରେ ଯେପରି କଠୋର ଦଣ୍ଡ ଦିଆଯାଉଥିଲା, ଆଧୁନିକ ଛାତ୍ରମାନେ ତାହା କଳ୍ପନା କରି ପାରିବେ ନାହିଁ । ସାମାନ୍ୟ ଦୋଷ ପାଇଁ ସେମାନଙ୍କୁ ଶୃଙ୍ଖଳ ପ୍ରହାର କରାଯାଉଥିଲା । ଶିକ୍ଷକମାନେ ମନେକରୁଥିଲେ ଯେ ପିଲା ଯେତିକି ମାଡ଼ ଖାଇବ ପାଠ ସେତେ ଭଲ ହେବ । ଖାଲି ସେତିକି ନୁହେଁ ; ବଡ଼ ପିଲାମାନେ ସାନ ପିଲାଙ୍କୁ ଖୁବ୍ ହଇରାଣ କରୁଥିଲେ । ଦୁର୍ବଳ ଶ୍ରେଣୀ ପିଲାମାନଙ୍କ ଉପରେ ବେଶି ଅତ୍ୟାଚାର ହେଉଥିଲା । ମାଡ଼ ଖାଇବା ଫଳରେ କେତେକ ପିଲା ଚିରଜୀବନ ପାଇଁ ବିକଳାଙ୍ଗ ମଧ୍ୟ ହୋଇ ଯାଉଥିଲେ । କହିବାକୁ ଗଲେ ପିଲାଙ୍କ ପକ୍ଷରେ ସ୍କୁଲ ଥିଲା ଯମପୁର ।

ଟମାସ ଆର୍ଣ୍ଣୋଲ୍ଡ ଏ ପ୍ରକାର ପ୍ରଚଳିତ ଶିକ୍ଷାପଦ୍ଧତିର ବିରୋଧୀ ଥିଲେ । ଆଗରୁ ଶିକ୍ଷକତା କରିଥିବାରୁ ସେ ଏ ପ୍ରକାର ମାଡ଼ର ଅପକାରିତା ବୁଝି ପାରିଥିଲେ । ଥରେ ସେ ଗୋଟିଏ ପିଲାକୁ କୌଣସି ବିଷୟ ବୁଝାଉଥିଲେ । ପିଲାଟି ମୋଟାବୁଦ୍ଧିଆ । ସେ ବିଷୟଟିକୁ ବୁଝି ପାରିଲା ନାହିଁ । ଆର୍ଣ୍ଣୋଲ୍ଡ ତା ଉପରେ ରାଗିଯାଇ ତାକୁ ଗାଳି ଦେଲେ । ପିଲାଟି ବିକଳ ହୋଇ ତାଙ୍କୁ କହିଲା, "ମହାଶୟ, ମୋ ଉପରେ ରାଗ କରୁଛନ୍ତି କାହିଁକି ? ମୁଁ ମୋର ଯଥାସାଧ୍ୟ ଚେଷ୍ଟା କରୁଛି; ମାତ୍ର କଅଣ କରିବି ?"

ଆର୍ଣ୍ଣୋଲ୍ଡ ପିଲାଟି ଉପରେ ବୃଥା ରାଗିଥିବାରୁ ମନେ ମନେ ଅନୁତାପ କଲେ । ତାର ସେହି ବିକଳ ଦୃଷ୍ଟିକୁ ସେ ଜୀବନ ସାରା

ଭୁଲ ପାଉ ନ ଥିଲେ । ପରବର୍ତ୍ତୀ କାଳରେ ସେ କେବେ ହେଲେ କୌଣସି ଗୁରୁ ପ୍ରତି କଟୁବାକ୍ୟ ପ୍ରୟୋଗ କରୁ ନ ଥିଲେ ।

ଆର୍ଣ୍ଣଓଲ୍ଡ ରଗ୍‌ବି ସ୍କୁଲରେ ଛାତ୍ରମାନଙ୍କ ପ୍ରତି ସଦୟ ବ୍ୟବହାର ଦେଖାଇଲେ ଏବଂ ଶାରୀରିକ ଦଣ୍ଡ ଉଠାଇ ଦେଲେ । କେତେକ ଶିକ୍ଷକ ଏହି ନୂତନ ଶିକ୍ଷାଦାନ ପ୍ରଣାଳୀକୁ ଆନନ୍ଦରେ ଗ୍ରହଣ କଲେ । ଆଉ କେତେକ ଶିକ୍ଷକ ଭାବିଲେ—ଆର୍ଣ୍ଣଓଲ୍ଡ ପିଲାଗୁଡ଼ାଙ୍କ ଜୀବନ ନଷ୍ଟ କରିଦେବେ । ପିଲାଙ୍କୁ ଏତେ ମୁହଁ ଦେଲେ ସେଗୁଡ଼ାକ ଅମଣିଷ ହୋଇଯିବେ ।

ପ୍ରଥମେ ଆର୍ଣ୍ଣଓଲ୍ଡ ସବୁ ପିଲାଙ୍କୁ ଏକାଠି କରି ନିଜ ମନକଥା ବୁଝାଇ ଦେଇ କହିଲେ—ତୁମ୍ଭମାନଙ୍କୁ ଅନେକ ବିଷୟରେ ସ୍ୱାଧୀନତା ଦିଆଯିବ । ଯେତେଦୂର ସମ୍ଭବ ମାଡ଼ ଉଠାଇ ଦିଆଯିବ । ତୁମ୍ଭେମାନେ ଭଦ୍ରସନ୍ତାନ, ତୁମ୍ଭମାନଙ୍କର ଦାୟିତ୍ୱଜ୍ଞାନ ଅଛି; ଆତ୍ମ-ସମ୍ମାନ ବୋଧ ଅଛି । ତୁମ୍ଭମାନଙ୍କ କାର୍ଯ୍ୟକୁ ଜଗି ଦଣ୍ଡ ଦେଲେ ତୁମ୍ଭେମାନେ ହୁଏତ ଭୟକରି ଏଠାରେ ଭଲ ଆଚରଣ ଦେଖାଇବ; କିନ୍ତୁ ତୁମ୍ଭେମାନେ ଚିରଦିନ ତ ଏଠାରେ ରହିବ ନାହିଁ । ଦିନେ ସ୍କୁଲ ଛାଡ଼ି ସମାଜରେ ସ୍ୱାଧୀନ ଜୀବନ ଯାପନ କରିବ । ତେଣୁ ସ୍କୁଲରେ ସ୍ୱାଧୀନଭାବରେ ଚଳିବାକୁ ଶିଖି ନ ଥିଲେ ପରବର୍ତ୍ତୀ ଜୀବନରେ ସମାଜରେ ସ୍ୱାଧୀନ ଭାବରେ ଚଳିବ କିପରି ? ନିଜର ଦାୟିତ୍ୱ ବୁଝି କାମ କର ।

ପିଲାମାନେ ଏ କଥା ଶୁଣି ଆଗ ବିଶ୍ୱାସ କରି ପାରିଲେ ନାହିଁ । ମାଡ଼ରୁ ରକ୍ଷା ପାଇବା ପାଇଁ ମିଛ କହିବା ସେମାନଙ୍କର ଅଭ୍ୟାସ ହୋଇ ଯାଇଥିଲା । ବେଳେ ବେଳେ କୌଣସି ପିଲାର ଦୁଷ୍ଟାମି ତାଙ୍କୁ ଜଣାଇ ଦିଆଯାଏ । ସେ ପିଲାକୁ ଡାକି ଆର୍ଣ୍ଣଓଲ୍ଡ କାରଣ ପଚାରନ୍ତି ।

ପିଲାଟି କୌଣସି ମିଥ୍ୟା କାରଣ ଦର୍ଶାଏ । ଆର୍ଣ୍ଣୋଲ୍ଡ଼ ତାହା ଶୁଣି କହନ୍ତି, "ତୁମେ ଯେତେବେଳେ ଏପରି କହୁଛ ତେବେ ତା ନିଶ୍ଚୟ ସତ । ତୁମକୁ ଅବିଶ୍ୱାସ କରିବାର କିଛି କାରଣ ନାହିଁ ।"

ପିଲାଟି ଦେଖେ ଯେ ତା ମିଛକଥାକୁ ମଧ୍ୟ ହେଡ୍‌ମାଷ୍ଟର ବିଶ୍ୱାସ କରୁଛନ୍ତି । ତା ନିଜ ଆଚରଣରେ ସେ ଲଜ୍ଜା ଅନୁଭବ କରେ । ଏହିପରି କେତେକ ଘଟଣା ଘଟିବା ପରେ ଛାତ୍ରମାନେ ଆଉ ତାଙ୍କ ଆଗରେ କେବେହେଲେ ମିଛ କହିବାକୁ ମନ କଲେ ନାହିଁ । ଆର୍ଣ୍ଣୋଲଡ଼ଙ୍କ ପାଖେ ମିଛ କହିବା ଏକ ପାପ ବୋଲି ସେମାନେ ବିଚାରିଲେ ।

ଆର୍ଣ୍ଣୋଲ୍‌ଡ଼ଙ୍କ ଏଇ ନୂଆ ଶିକ୍ଷାପ୍ରଣାଳୀର ଅନେକେ ବିରୋଧୀ ଥିଲେ । ସେମାନଙ୍କର ଧାରଣା ଥିଲା ଯେ ଆର୍ଣ୍ଣୋଲ୍‌ଡ ସ୍କୁଲଟିକୁ ଖରାପ କରିଦେବେ ; କିନ୍ତୁ ଆର୍ଣ୍ଣୋଲ୍‌ଡ ପ୍ରତ୍ୟେକ ଛାତ୍ରଠାରେ ଭଲ ଗୁଣ ଅଛି ବୋଲି ବିଶ୍ୱାସ କରୁଥିଲେ । ଏହି ବିଶ୍ୱାସ ଫଳରେ ସେ ସହସ୍ର ସହସ୍ର ଛାତ୍ରଙ୍କର ଜୀବନ ଗଢ଼ିପାରିଥିଲେ ।

ରଗବି ସ୍କୁଲରେ ଶହ ଶହ ପିଲା ଥିଲେ । ସେ ସେମାନଙ୍କୁ ନିଜ ସନ୍ତାନପରି ଦେଖୁଥିଲେ । ଯେଉଁମାନେ ପଢ଼ାପଢ଼ିରେ ଦୁର୍ବଳ ଥିଲେ ସେମାନଙ୍କୁ ସେ ବିଶେଷ ସାହାଯ୍ୟ ଦେଉଥିଲେ । ସ୍କୁଲରେ ପଢ଼ା ସମୟ ଛଡ଼ା ଅନ୍ୟ ସମୟରେ କୌଣସି ଛାତ୍ର ତାଙ୍କ ସାହାଯ୍ୟ ଲୋଡ଼ିଲେ ସେ ଆନନ୍ଦରେ ତାକୁ ସାହାଯ୍ୟ କରୁଥିଲେ । ଯେଉଁ ପିଲାମାନେ ସାଧାରଣତଃ ଅସାବଧାନ ବା ଅଳସୁଆ ଥିଲେ ସେମାନେ ମଧ୍ୟ ଯଥାସାଧ୍ୟ ଚେଷ୍ଟା କରି ଭଲ ପଢ଼ା ଦେଖାଇଲେ । ସେମାନେ ଭାବିଲେ—ଆମେ ଭଲ ପଢ଼ା ନ କଲେ ଆର୍ଣ୍ଣୋଲ୍‌ଡ଼ଙ୍କ

ମନରେ କଷ୍ଟ ହେବ । ସେ ଆମ ଭଲ ପାଇଁ ଦିନ ରାତି ଲାଗିଛନ୍ତି । ଆମେ ତାଙ୍କ ମନରେ କଷ୍ଟ ଦେବା କାହିଁକି ?

ପିଲାମାନେ ସ୍କୁଲ ଛାଡ଼ି ଗଲାପରେ ମଧ୍ୟ ଆର୍ଣ୍ଣୋଲଡ୍‌ଙ୍କ ସହିତ ପତ୍ର ଦିଆ ନିଆ କରୁଥିଲେ । ଫଳରେ ଛାତ୍ରମାନଙ୍କ ସହିତ ତାଙ୍କର ଗୋଟିଏ ଜୀବନବ୍ୟାପୀ ସମ୍ବନ୍ଧ ରହିଥିଲା । କୌଣସି ପୁରୁଣା ଛାତ୍ରଠାରୁ ଚିଠି ପାଇଲେ ତାଙ୍କ ମନରେ ବଡ଼ ଆନନ୍ଦ ହେଉଥିଲା । ତାଙ୍କ ବନ୍ଧୁମାନେ ବିସ୍ମିତ ହୋଇ କହୁଥିଲେ—ଏତେ ପୁରୁଣା ଛାତ୍ରଙ୍କ ପାଖରୁ ଚିଠିର ଉତ୍ତର ଦେବାପାଇଁ, ସେମାନଙ୍କୁ ପରାମର୍ଶ ଦେବାପାଇଁ ଆର୍ଣ୍ଣୋଲଡ୍‌ଙ୍କୁ ବେଳ ମିଳୁଛି କିପରି ?

ଶିକ୍ଷାଦାନ ତଥା ସ୍କୁଲ ପରିଚାଳନା କାର୍ଯ୍ୟରେ ସେ ସର୍ବୋଚ୍ଚ ଶ୍ରେଣୀର ପିଲାମାନଙ୍କ ଉପରେ ବହୁତ ନିର୍ଭର କରୁଥିଲେ । ସେମାନଙ୍କ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ସେ କହୁଥିଲେ—ଯେତେ ଦିନଯାଏ ମୋର ଏମାନଙ୍କଠାରେ ବିଶ୍ୱାସ ଅଛି, ମୁଁ ଏ କାର୍ଯ୍ୟ କଦାପି ଛାଡ଼ିବି ନାହିଁ ; ଏପରିକି ଏହାଠାରୁ ଉଚ୍ଚ ପଦ ବା ଅଧିକ ବେତନ ମିଳିଲେ ମଧ୍ୟ ଯିବିନାହିଁ । ମାତ୍ର ଯେତେବେଳେ ସେମାନେ ମୋତେ ସାହାଯ୍ୟ କରିବେ ନାହିଁ, ସେହି ମୁହୂର୍ତ୍ତରେ ମୁଁ ସ୍କୁଲ ତ୍ୟାଗ କରିବି ।

ଖେଳ କୌତୁକ ପ୍ରତି ମଧ୍ୟ ଆର୍ଣ୍ଣୋଲଡ୍‌ଙ୍କର ବିଶେଷ ଦୃଷ୍ଟି ଥିଲା । ତାଙ୍କଠାରୁ ପ୍ରେରଣା ପାଇ ସ୍କୁଲର ପିଲାମାନେ ଖେଳ ପ୍ରତି ଅଧିକ ମନୋଯୋଗୀ ହେଲେ । ଜଣେ ଆଦର୍ଶ ଶିକ୍ଷକ-ଭାବରେ ଆର୍ଣ୍ଣୋଲଡ୍ ପରିଚିତ ହେବାରୁ ଅନେକ ଶିକ୍ଷାପ୍ରେମୀ ରଗ୍‌ବି ସ୍କୁଲ ଦେଖିବାକୁ ଆସୁଥିଲେ । ଆର୍ଣ୍ଣୋଲଡ୍ କେତେବେଳେ ପଡ଼ିଆରେ ଛିଡ଼ାହୋଇ ପିଲାମାନଙ୍କ ଖେଳ ଦେଖୁଥାନ୍ତି ତ

ବେଳେବେଳେ ପିଲାଙ୍କୁ ସଙ୍ଗରେ ନେଇ ଦୂର ସ୍ଥାନ ପରିଦର୍ଶନରେ ଯାଉଥାନ୍ତି । ତାଙ୍କର ଉତ୍ସାହ ଦେଖି ବୈଦେଶିକ ପରିଦର୍ଶକମାନେ ବିସ୍ମିତ ହୋଇଯାଆନ୍ତି ।

ରଗ୍‌ବି ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଛାତ୍ରମାନେ ସମାଜରେ ଭିନ୍ନ ଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । କେହି କେହି ଖୁବ୍ ଉଚ୍ଚ ଆସନ ମଧ୍ୟ ଅଧିକାର କରିଥିଲେ । ସେମାନେ ସମସ୍ତେ ଆର୍ଣ୍ଣୋଲ୍‌ଡ୍‌ଙ୍କର ପ୍ରଶଂସା କରି ତାଙ୍କ ପ୍ରତି ଜୀବନଯାକ ଶ୍ରଦ୍ଧା ଓ ଭକ୍ତି ପୋଷଣ କରିଥିଲେ ।

ଆର୍ଣ୍ଣୋଲ୍‌ଡ୍ ଧନରେ ବା କ୍ଷମତାରେ ବଡ଼ ନ ଥିଲେ । ସେ ଶତ ଶତ ଛାତ୍ରଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ମନୁଷ୍ୟ କରିପାରିଥିଲେ । ଏବେ ସୁଦ୍ଧା ଆଦର୍ଶ ଶିକ୍ଷକଭାବରେ ତାଙ୍କର ନାମ ପୃଥିବୀରେ ଖ୍ୟାତ ।

୧୮୪୨ ମସିହା ଜୁନ ୧୧ ତାରିଖ ଦିନ ସ୍କୁଲବର୍ଷ ଶେଷ ହେବାରୁ ଆର୍ଣ୍ଣୋଲ୍‌ଡ୍ ଛାତ୍ରମାନଙ୍କଠାରୁ ବିଦାୟ ନେଲେ ଓ କୃତୀ ଛାତ୍ରମାନଙ୍କୁ ପୁରସ୍କାର ଦେଲେ । ସେଦିନ ସେ ଏଭନ ନଦୀରେ ସ୍ନାନ କଲେ । ସନ୍ଧ୍ୟାବେଳେ ଜଣେ ପୁରାତନ ଛାତ୍ର ସହିତ କିଛି ସମୟ ବୁଲିଲେ । ରାତିରେ ସେ ଶୋଇବାକୁ ଗଲେ । ତା'ପରଦିନ ସକାଳେ ବିଛଣାରୁ ଉଠିବାବେଳକୁ ସେ ଛାତିରେ ତୀବ୍ର ଯନ୍ତ୍ରଣା ଅନୁଭବ କଲେ । ତାଙ୍କ ସ୍ତ୍ରୀ ଏହା ଶୁଣି ଜଣେ ଡାକ୍ତରଙ୍କୁ ଡକାଇ ପଠାଇଲେ । ଡାକ୍ତର ପରୀକ୍ଷାକରି କହିଲେ ଯେ ଭୟର କାରଣ ନାହିଁ । ମାତ୍ର ଅଳ୍ପ ସମୟ ଭିତରେ ଯନ୍ତ୍ରଣା ଭୀଷଣ ହୋଇଉଠିଲା ଏବଂ ଆର୍ଣ୍ଣୋଲ୍‌ଡ୍ ମୃତ୍ୟୁମୁଖରେ ପଡ଼ିଲେ । ମୃତ୍ୟୁବେଳକୁ ତାଙ୍କର ବୟସ ମାତ୍ର ସତଚାଳିଶ ବର୍ଷ ହୋଇଥିଲା ।

ଦେଶର ନେତାମାନେ ଶିକ୍ଷକଙ୍କୁ ସମାଜର ଗଠନକର୍ତ୍ତା ବୋଲି କହିଥାନ୍ତି । ଯେହେତୁ ଛାତ୍ରମାନେ ଦେଶର ଭବିଷ୍ୟତ, ସେମାନଙ୍କୁ ଗଢ଼ିବାର ଭାର ଶିକ୍ଷକମାନଙ୍କ ଉପରେ । ଶିକ୍ଷକମାନେ ଯେ ପ୍ରକୃତରେ ଦେଶ ଓ ସମାଜକୁ ଗଢ଼ିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିପାରନ୍ତି, ତାହା ଆର୍ଣ୍ଣୋଲ୍ଡ ଦେଖାଇଯାଇଅଛନ୍ତି ।

---

# ସ୍ୱାଧୀନ ଚୀନର ଜନକ ସନ୍‌ଏତ୍‌ସେନ୍

୧୮୯୪ ମସିହାର କଥା । କାଣ୍ଟନ ସହରର ଗୋଟିଏ ଘରେ ଅଠରଜଣ ଚୀନା ଯୁବକ ଗୋଟିଏ ଗୁପ୍ତ ସଭା ଡାକଥାନ୍ତି । କପରି ଚୀନାମାନଙ୍କର ଦୁରବସ୍ଥାର ପ୍ରତିକାର ହେବ, ଲୋକେ ସୁଖରେ ରହିବେ, ଏହାହିଁ ସେମାନେ ବିଚାର କରୁଥାନ୍ତି ।



[ ସନାଏତ୍‌ସେନ୍ ]

ସରକାରୀ ପୋଲିସ କପରି ଏ ଗୁପ୍ତସଭା କଥା ଜାଣି ପାରିଲେ ; ସେମାନେ ହଠାତ୍ ସଭାଘରେ ପଶି ସେମାନଙ୍କ ମଧ୍ୟରୁ ସତରଜଣଙ୍କୁ ଧରିନେଲେ ; ସେମାନଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । କେବଳ ଜଣେ

ସହରରୁ ଖସି ପଳାଇଗଲେ । ତାଙ୍କର ନାମ ସନ୍‌ଏତ୍‌ସେନ୍ । ସରକାର ଘୋଷଣା କଲେ—ଯେ ତାଙ୍କୁ ଧରିଆଣି ଦେବ ସେ ଯଥେଷ୍ଟ ପୁରସ୍କାର ପାଇବ ।

ଯେଉଁ ସମୟର କଥା କୁହାଯାଉଛି, ସେତେବେଳକୁ ଚୀନ ଦେଶର ଅବସ୍ଥା ଅତ୍ୟନ୍ତ ଖରାପ ଥିଲା । ଲୋକେ ଦୁଃଖ ଦାରିଦ୍ର୍ୟରେ ସଢ଼ୁଥିଲେ । ଶାସକମାନଙ୍କର ଅତ୍ୟାଚାରର ସୀମା ନ ଥିଲା । ଶତ ଶତ ବର୍ଷ ପୂର୍ବେ ଚୀନ ଦେଶର ଲୋକେ ଅତି ଉନ୍ନତ ଓ ସଭ୍ୟ ଥିଲେ । ବାଣିଜ୍ୟ, ବ୍ୟବସାୟ, କୃଷି, ଶିକ୍ଷା ସବୁଥିରେ ଚୀନର ଆସନ ଉଚ୍ଚ ଥିଲା । ମାତ୍ର ବିଦେଶୀ ସରକାରଙ୍କ ଅଧୀନରେ ଚୀନର ଘୋର ଅବନତି ଘଟିଥିଲା । ଲୋକଙ୍କର ଜୀବନ ଘୋର ଦୁଃଖ କଷ୍ଟରେ କଟୁଥିଲା ।

ଏପରି ଅବନତିର ପ୍ରଧାନ କାରଣ ଏହି ଯେ ତିନଶ ଚାରିଶ ବର୍ଷତଳେ ଚୀନ ଦେଶରେ ଦୁଇଟି ଶ୍ରେଣୀ ମଧ୍ୟରେ ବିବାଦ ହୋଇ ଯୁଦ୍ଧ ଲାଗିଲା । ଏହି ଯୁଦ୍ଧରେ ଗୋଟିଏ ପକ୍ଷ ମାଞ୍ଚୁ ନାମକ ଗୋଟିଏ ଜାତିର ସାହାଯ୍ୟ ନେଲେ । ଏହି ମାଞ୍ଚୁମାନେ ଏଥିପୂର୍ବରୁ ଚୀନା-ମାନଙ୍କ ସହିତ ବାରମ୍ବାର ଯୁଦ୍ଧ ଚଳାଇଥିଲେ । ଏବେ ସେମାନଙ୍କୁ ସୁବିଧା ମିଳିଗଲା । ସେମାନେ ଗୋଟିଏ ଦଳକୁ ସାହାଯ୍ୟ ଦେଇ ଅପର ଚୀନାମାନଙ୍କୁ ଯୁଦ୍ଧରେ ହରାଇ ନିଜେ ଚୀନ ଅଧିକାର କରିନେଲେ । ଏହି ମାଞ୍ଚୁ ଜାତିର ଲୋକେ ଚୀନର ସର୍ବେସର୍ବା ହୋଇ ଉଠିଲେ । ସମ୍ରାଟଙ୍କଠାରୁ ଆରମ୍ଭ କରି ବଡ଼ ବଡ଼ ସ୍ଥାନ ସବୁ ରାଜକାର୍ଯ୍ୟ ସେହିମାନଙ୍କ ହାତରେ ରହିଲା । ସେମାନେ ଚୀନର ଲୋକଙ୍କ ସୁଖ ସୁବିଧା ନ ଦେଖି ସେମାନଙ୍କୁ ଲୁଟି କରିବାକୁ ଲାଗିଲେ । ଫଳରେ ଚୀନାମାନେ ନିଜ ଦେଶରେ ଦାସ ପରି ରହିଲେ ।

ଲୋକେ ଶିକ୍ଷା ପାଇଲେ ନାହିଁ ; ସେମାନଙ୍କ ପ୍ରାଚୀନ ସଭ୍ୟତା ଲୋପପାଇଗଲା ।

ଚୀନର କେତେକ ସାହସୀ ଯୁବକ ବେଳେ ବେଳେ ମାଞ୍ଚୁ-ମାନଙ୍କୁ ଦେଶରୁ ତଡ଼ିବାକୁ ଯଥେଷ୍ଟ ଚେଷ୍ଟା କରୁଥିଲେ । ମାତ୍ର ମାଞ୍ଚୁ କର୍ମଚାରୀମାନେ ସେମାନଙ୍କୁ କଠୋର ଦଣ୍ଡ ଦେଇ ଦମନ କରୁଥିଲେ । ଆଗରୁ ସନାୟତ୍‌ସେନଙ୍କ ସହିତ ଅନ୍ୟ ସତରଜଣ ଯୁବକ ଯେଉଁ ସଭା କରୁଥିଲେ ସେମାନେ ଏହିପରି କେତେଜଣ ଦେଶପ୍ରେମୀ ବିଦ୍ରୋହୀ ଥିଲେ ।

ସନାୟତ୍ ସେନ୍ ୧୮୬୭ ମସିହାରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତା ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ ହୋଇଥିଲେ । ତେଣୁ ସେ ଶିକ୍ଷାଦୀକ୍ଷା ପ୍ରତି ଆକୃଷ୍ଟ ଥିଲେ । ସନାୟତ୍ ସେନଙ୍କର ଅଠରବର୍ଷ ବୟସବେଳେ ପିତା ତାଙ୍କୁ ଗୋଟିଏ ଖ୍ରୀଷ୍ଟୀୟ ମିଶନରେ (Anglo American Mission) ଯୋଗଦେବାକୁ ଛାଡ଼ିଦେଲେ । ଏହି ମିଶନ ସାହାଯ୍ୟରେ ସେ କାଣ୍ଟନ ସହରରେ ଡାକ୍ତରୀ ବିଦ୍ୟା ପଢ଼ିଲେ । ଅସ୍ତ୍ରଚିକିତ୍ସା ପ୍ରତି ତାଙ୍କର ଅଧିକ ଆଦର ଥିଲା । ଫଳରେ ସେ ଜଣେ ବରିଷ୍ଠ ଅସ୍ତ୍ରଚିକିତ୍ସକ ହେଲେ । ଯଥାସମୟରେ ସେ ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମାକାଓ ସହରରେ ବ୍ୟବସାୟ ଆରମ୍ଭ କଲେ ।

ଅସ୍ତ୍ରଚିକିତ୍ସକ ରୂପେ ସନାୟତ୍‌ସେନ ଅଳ୍ପଦିନ ଭିତରେ ଖୁବ୍ ନାମ ଅର୍ଜନ କଲେ । ତାଙ୍କର ସ୍ୱଭାବ ବଡ଼ ମଧୁର ଥିଲା ଓ ସେ ବଡ଼ ବିନୟୀ ଥିଲେ । ତେଣୁ ସବୁଶ୍ରେଣୀର ଲୋକେ ତାଙ୍କୁ ଆଦର କରୁଥିଲେ ।

ଚୀନ ଦେଶରେ ଅସ୍ତ୍ରଚିକିତ୍ସା ବିଷୟରେ କେତେକ ଅଦ୍ଭୁତ ବ୍ୟବସ୍ଥା ଥିଲା । ଆମ ଦେଶରେ ଅସ୍ତ୍ରଚିକିତ୍ସାଗାର ଭିତରକୁ ସାହାଯ୍ୟକାରୀଙ୍କ ଛଡ଼ା ଅନ୍ୟ କାହାରିକୁ ଛାଡ଼ିଦିଆଯାଏ ନାହିଁ । ମାତ୍ର ଚୀନରେ ଅସ୍ତ୍ରଚିକିତ୍ସାବେଳେ ଡାକ୍ତରଖାନାର କର୍ତ୍ତୃପକ୍ଷ ତଥା ରୋଗୀର ବନ୍ଧୁବାନ୍ଧବମାନେ ଉପସ୍ଥିତ ରହନ୍ତି । ଅସ୍ତ୍ରଚିକିତ୍ସା ଦେଖି ସେମାନେ ଚିକିତ୍ସକଙ୍କ କାର୍ଯ୍ୟର ଦୋଷଗୁଣ ମଧ୍ୟ ଆଲୋଚନା କରନ୍ତି । ସନାଏତ୍‌ଙ୍କ ଅସ୍ତ୍ରଚିକିତ୍ସା ସମ୍ବନ୍ଧରେ ସବୁ ଶ୍ରେଣୀର ଲୋକଙ୍କର ଉଚ୍ଚଧାରଣା ଜନ୍ମିଥିଲା ।

ଅସ୍ତ୍ରଚିକିତ୍ସକ ଭାବରେ ସୁନାମ ଅର୍ଜିଥିଲେ ହେଁ ସନାଏତ୍‌ଙ୍କର ପ୍ରଧାନ ଲକ୍ଷ୍ୟ ଥିଲା, କପଟି ମାଞ୍ଚୁ ରାଜତ୍ୱକୁ ଧ୍ୱଂସ କରିବାକୁ ହେବ । ସେ ଯୁଦ୍ଧପ୍ରିୟ ନ ଥିଲେ । ସେ ଶାନ୍ତିପୂର୍ଣ୍ଣ ଉପାୟରେ ନିଜର ଉଦ୍ଦେଶ୍ୟ ସିଦ୍ଧି କରିବାକୁ ଇଚ୍ଛା କରୁଥିଲେ । ତେଣୁ ସେ ଅନ୍ୟ କେତେକଙ୍କ ସଙ୍ଗେ ମିଶି ରାଜ୍ୟରେ ଚାଲିଥିବା କେତେକ ଅନ୍ୟାୟ ଅତ୍ୟାଚାରର ପ୍ରତିକାର କରିବାପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ । ପ୍ରଥମେ ପ୍ରଥମେ ସରକାର କିଛି ନ ଜାଣିଲାପରି ଚୁପ୍ ହୋଇ ରହିଲେ । ତାପରେ ହଠାତ୍ ସନାଏତ୍‌ଙ୍କର ବନ୍ଧୁମାନଙ୍କୁ ବନ୍ଦୀ କରାଗଲା । ସନାଏତ୍ କୌଣସି ପ୍ରକାରେ ପଳାଇଗଲେ ।

ସେ କାଣ୍ଟନରେ ଥିବା ସମୟରେ ତାଙ୍କୁ ଧରିବାପାଇଁ ଆଉ ଥରେ ଚେଷ୍ଟା ହେଲା । ସେ ଜଣେ ବନ୍ଧୁଙ୍କ ଘରେ ଗୁପ୍ତରେ ରହିଥିଲେ । ପୋଲିସ ତାଙ୍କୁ ଧରିବାକୁ ଚେଷ୍ଟା କରୁଥିବାର ଜାଣିପାରି ଉକ୍ତ ବନ୍ଧୁ ତାଙ୍କୁ ସହରର ପାଚିରି ଆରପାଖକୁ ଓହ୍ଲାଇ ଦେଲେ । ସନାଏତ୍ ସହର ବାହାରେ ଥିବା ଗୋଟିଏ ନାଳ-

ବନ୍ଧରେ ଆଶ୍ରୟ ନେଲେ । ଏଣେ ପୋଲିସ ତାଙ୍କୁ ଖୋଜିବାରେ ଲାଗିଥାନ୍ତି । ଯଦି ସୁଭାଷଚନ୍ଦ୍ର ସେତେବେଳେ ଧରାପଡ଼ିଥାନ୍ତେ, ତାଙ୍କର ଆଉ ପ୍ରାଣର ଆଶା ରହି ନଥାନ୍ତା । ସେ ଛଦ୍ମବେଶ ଧରି ବୁଲି ବୁଲି ଶେଷରେ ମାଲାୟରେ ନଜରରେ ପଡ଼ିଗଲେ । ମାତ୍ର ଏଠାରେ ମଧ୍ୟ ତାଙ୍କର ଜୀବନ ନିରାପଦ ନ ଥିଲା । ତେଣୁ ସେ ଶ୍ୟାମକୁ ଚାଲିଗଲେ । ଏହି ଘଟଣା ପରେ କେତେକ ବର୍ଷଯାଏ ତାଙ୍କୁ ଘୋର କଷ୍ଟ ସହିବାକୁ ପଡ଼ିଲା । ଅନେକ ସମୟରେ ଶୁଖିଲା ଭାତ ମୁଠିଏ ହେଲେ ତାଙ୍କ ଭାଗ୍ୟରେ ଜୁଟୁ ନଥିଲା । ଶହ ଶହ ମାଇଲ ପାଦରେ ଚାଲି ଚାଲି ଯିବାକୁ ହେଉଥିଲା । ମାଞ୍ଚୁ ସରକାର ଜାଣିଥିଲେ ଯେ ସୁଭାଷଚନ୍ଦ୍ର ସେନ୍‌କୁ ଦେଶର ଲୋକେ ଅତ୍ୟନ୍ତ ଶ୍ରଦ୍ଧା କରନ୍ତି ଏବଂ ସେ ମାଞ୍ଚୁ ସରକାରଙ୍କର ବିରୋଧୀ । ତେଣୁ ତାଙ୍କୁ କୌଣସି ଉପାୟରେ ଧରିବା ସରକାରଙ୍କର ଉଦ୍ଦେଶ୍ୟ ହେଲା । ତାଙ୍କୁ ଧରିଦେଲେ ଯଥେଷ୍ଟ ପୁରସ୍କାର ମିଳିବ ବୋଲି ସରକାର ଘୋଷଣା କଲେ । ତେଣୁ ସୁଭାଷଚନ୍ଦ୍ରସେନ୍ ଅତି ସାବଧାନରେ ଚଳୁଥାନ୍ତି ।

ଏହାପରେ ସରକାରୀ ପୋଲିସଙ୍କଠାରୁ ବାରମ୍ବାର ଖସିଯାଇ ସେ ଜାପାନରେ ପହଞ୍ଚିଲେ । ତାଙ୍କ ମୁଣ୍ଡରେ ଥିବା ଲମ୍ବ ବାଳକୁ ସେ କାଟି ପକାଇଲେ ଓ ଦାଢ଼ି ବଢ଼ାଇଲେ । ଚୀନ ଦେଶର ପୋଷାକ ଛାଡ଼ି ଜାପାନୀ ପୋଷାକ ପିନ୍ଧିଲେ । ଏହା ଫଳରେ ଜାପାନରେ ଥିବା ମାଞ୍ଚୁ ସରକାର ପକ୍ଷର ଲୋକେ ତାଙ୍କୁ ଆଉ ଚିହ୍ନିପାରିଲେ ନାହିଁ ।

ଜାପାନରେ କିଛିକାଳ ରହି ସେ ଇଂଲଣ୍ଡକୁ ଚାଲିଗଲେ । ମାତ୍ର ସେଠାରେ ମଧ୍ୟ ତାଙ୍କର ଶତ୍ରୁର ଅଭାବ ନ ଥିଲା । ଲଣ୍ଡନରେ ଥିବା ଚୀନରାଜଦୂତଙ୍କ ଆଦେଶରେ କେତେକ ଚୀନ କର୍ମଚାରୀ

ତାଙ୍କୁ କୌଶଳରେ ଧରିନେଇ ଗୋଟିଏ ଘରେ ବନ୍ଦୀ କରି ରଖିଲେ । ସ୍ୱଜଦୂତ ତାଙ୍କୁ ଜାହାଜରେ ଚୀନକୁ ପଠାଇ ଦେବାର ବ୍ୟବସ୍ଥା କରୁଥାନ୍ତି । ସେଠାରେ ଯେ ତାଙ୍କର ପ୍ରାଣଦଣ୍ଡ ହେବ, ଏ କଥା ନିଶ୍ଚିତ । ଏହିପରି ବନ୍ଦୀଗୃହରେ ସେ ବାରଦିନ କଟାଇଲେ । ନିଜର ବିପଦ କଥା କାହାରିକୁ ଜଣାଇବାପାଇଁ ତାଙ୍କର କୌଣସି ଉପାୟ ନ ଥିଲା ।

ଜଣେ ଇଂରେଜ ମହିଳା କୌଣସି ପ୍ରକାରେ ସନ୍‌ୟେତ୍‌ଙ୍କ ଦୁରବସ୍ଥା କଥା ଜାଣିପାରିଲେ । ସେ ତାଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କଲେ । ସେ ଜାଣିଥିଲେ ଯେ ସେତେବେଳେ ଲଣ୍ଡନରେ ଥିବା ଡାକ୍ତର ଜେମସ୍ କଣ୍ଟାଲି ସନ୍‌ୟେତ୍‌ଙ୍କର ଜଣେ ବନ୍ଧୁ । ସେ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ—

"ଗତ ରବିବାରଠାରୁ ଆପଣଙ୍କର ଜଣେ ବନ୍ଧୁ ଚୀନ ରାଷ୍ଟ୍ରଦୂତ ଭବନରେ ବନ୍ଦୀ ହୋଇ ରହିଛନ୍ତି । ରାଷ୍ଟ୍ରଦୂତଙ୍କ କର୍ମଚାରୀମାନେ ତାଙ୍କୁ ଚୀନକୁ ପଠାଇବାକୁ ବସିଛନ୍ତି । ସେଠାକୁ ଗଲେ ନିଶ୍ଚୟ ତାଙ୍କର ପ୍ରାଣଦଣ୍ଡ ହେବ । ଆପଣ ଯଦି କିଛି ପ୍ରତିକାର ନ କରନ୍ତି ତେବେ ତାଙ୍କୁ ଚୀନ ପଠାଇଦିଆଯିବ ଓ ସେ କଥା ଏଠାରେ କେହି ଜାଣି ପାରିବେ ନାହିଁ । ମୁଁ ଏ ଚିଠିରେ ମୋର ନାମ ଦେଇପାରୁ ନାହିଁ । କିନ୍ତୁ ମୋର ଆଶା, ଆପଣ ମୋ କଥାକୁ ବିଶ୍ୱାସ କରିବେ । ଯାହା କରିବାର କଥା, ଶୀଘ୍ର କରନ୍ତୁ ; ଡେରି ହେଲେ ଆପଣଙ୍କ ଚେଷ୍ଟାର କିଛି ମୂଲ୍ୟ ରହିବ ନାହିଁ । ମୋର ମନେହୁଏ ସେ ଲୋକଟିର ନାମ ସିନ୍‌ୟେନ୍‌ସେନ ।"

ଡାକ୍ତର କାଣ୍ଟଲି ଏହି ବେନାମି ଚିଠି ପାଇବାମାତ୍ରେ ସନାଏତ୍‌ସେନଙ୍କୁ ଉଦ୍ଧାର କରିବା ଚେଷ୍ଟାରେ ଲାଗିପଡ଼ିଲେ । ତାହାଫଳରେ ସନାଏତ୍ ମୁକ୍ତି ପାଇଲେ । ଆଉ ଦିନଟିଏ ମାତ୍ର ଡେରି ହୋଇଥିଲେ ତାଙ୍କ ଜୀବନର ଆଶା ରହି ନଥାନ୍ତା ।

ଏହି କଠୋର ଅନୁଭୂତି ପରେ ସନାଏତ୍‌ସେନ୍ ଚୀନଦେଶ-ବାସୀଙ୍କୁ ପରାଧୀନତା ଶୃଙ୍ଖଳରୁ ମୁକ୍ତ କରିବାକୁ ଆହୁରି ଦୃଢ଼ପ୍ରତିଜ୍ଞ ହେଲେ । ପୃଥିବୀର ଅନ୍ୟ ଯେଉଁ ସବୁ ସ୍ଥାନରେ ଚୀନାମାନେ ବାସ କରୁଥିଲେ, ସେମାନଙ୍କୁ ସେ ସାହାଯ୍ୟ ପାଇଁ ନିବେଦନ କଲେ । ସେ ଚୀନର କେତେକ ଦୁର୍ଗମ ସ୍ଥାନ, ଷ୍ଟ୍ରେଟ୍‌ସ ସେଟଲମେଣ୍ଟସ୍, ମାଲୟ ଉପଦ୍ୱୀପ, ଆମେରିକାର ଯୁକ୍ତରାଷ୍ଟ୍ର ଓ କେତେକ ଇଉରୋପୀୟ ରାଜ୍ୟ ଭ୍ରମଣ କରି ଚୀନାମାନଙ୍କୁ ସ୍ୱାଧୀନତା ପ୍ରତି ଆକୃଷ୍ଟ କଲେ । ସେ ଚୀନାମାନଙ୍କୁ ଏପରି ସଂଘବଦ୍ଧ କଲେ ଯେ ଦେଶରେ ବିଦ୍ରୋହ ଆରମ୍ଭ ହେଲାମାତ୍ରେ ସେମାନେ ସାହାଯ୍ୟ କରିବାକୁ ପ୍ରସ୍ତୁତ ହୋଇ ରହିଲେ ।

ଏଣେ ଶତ୍ରୁମାନେ ତାଙ୍କ ପଛେ ପଛେ ଲାଗି ରହିଥାନ୍ତି ; କିନ୍ତୁ ସନାଏତସେନ୍ ସେମାନଙ୍କ ଦୃଷ୍ଟିରେ ବାଲି ପଡ଼ୁଥିଲେ । ସେ ଭିନ୍ନ ଭିନ୍ନ ସ୍ଥାନରେ ଛଦ୍ମବେଶରେ ବୁଲୁଥିଲେ । କିନ୍ତୁ ତାଙ୍କର ଏପରି ଶକ୍ତି ଥିଲା ଯେ ସବୁଠାରେ ସେ ଚୀନାମାନଙ୍କ ସହ ମିଶୁ-ଥିଲେ ଓ ସେମାନଙ୍କଠାରୁ ଅର୍ଥ ସଂଗ୍ରହ କରୁଥିଲେ । ଥରେ ଫିଲାଡେଲଫିଆରେ ଗୋଟିଏ ସଭା ଶେଷରେ ଜଣେ ଚୀନା ଧୋବା ତାଙ୍କ ହାତରେ ଗୋଟିଏ ଥଳି ଦେଇ ଚାଲିଗଲା । ପରେ ଦେଖାଗଲା ଯେ ସେଥିରେ ଲୋକଟିର କୋଡ଼ିଏ ବର୍ଷର ସମସ୍ତ ସଞ୍ଚିତ ଧନ ଥିଲା ।

ଆଜଥରେ ନାନକିଂ ବନ୍ଦରରେ ସେ ଗୋଟିଏ ଜାହାଜରେ ଲୁଚିଥିଲେ । ଏହି ସମୟରେ ଜଣେ ଲୋକ ଭିତରକୁ ପଶି ଆସି କହିଲା, "ତୁମକୁ ମୁଁ ଧରିନେଇ ପାରିଲେ ପଚାଶ ହଜାର ଟଙ୍କା ପୁରସ୍କାର ପାଇବି ବୋଲି ମୋତେ ଜଣେ ସରକାରୀ କର୍ମଚାରୀ କହିଛନ୍ତି ।" ଏଥିରେ ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ତାକୁ ସେ ଦେଶର ଦୁରବସ୍ଥା ବୁଝାଇଁ ନିଜର ମତ ପ୍ରକାଶ କଲେ । ତାଙ୍କର ଯୁକ୍ତି ଶୁଣି ଲୋକଟି ସନ୍‌ୟାତ୍‌ସେନ୍‌ଙ୍କ ପାଦତଳେ ପଡ଼ି ଦୁଃଖ ପ୍ରକାଶ କଲା ଓ କ୍ଷମା ମାଗିଲା ।

ସନ୍‌ୟାତ୍‌ସେନ୍ କାଣ୍ଟନ୍ ସହରରେ ଥିବା ବେଳେ ଥରେ ରାତିରେ ଦୁଇଜଣ ରାଜକର୍ମଚାରୀ ବାରଜଣ ସୈନ୍ୟ ନେଇ ତାଙ୍କ କୋଠରୀରେ ପ୍ରବେଶ କଲେ । ସେ ବୁଝିପାରିଲେ ଯେ ତାଙ୍କର ଅବସ୍ଥା ଶୋଚନୀୟ । ତାଙ୍କୁ ଧରିପାରିଲେ କର୍ମଚାରୀମାନଙ୍କର ପଦୋନ୍ନତି ହେବ ; ସେମାନଙ୍କୁ ପୁରସ୍କାର ମିଳିବ ; ସେମାନେ ତାଙ୍କୁ କାହିଁକି ଛାଡ଼ିଦେବେ ?

ସନ୍‌ୟାତ୍‌ସେନ ନିରୁପାୟ ହୋଇ ଧର୍ମଶାସ୍ତ୍ରର କେତେକ ଅଂଶ ଉଚ୍ଚସ୍ୱରରେ ପାଠ କଲେ । ତାପରେ ସେ ସେମାନଙ୍କୁ ଦେଶର ଅବସ୍ଥା ବିଷୟରେ କେତେକ ପ୍ରଶ୍ନ କଲେ । ସେମାନେ ରାଜକର୍ମଚାରୀ ହେଲେହେଁ ଚୀନର ସନ୍ତାନ । ସେମାନେ ନିଜକୁ ଲଜ୍ଜିତ ବୋଧ କଲେ । ଯେଉଁ ଲୋକ ଚୀନ ସ୍ୱାଧୀନତା ପାଇଁ ନିଜର ପ୍ରାଣ ଦେବାକୁ ବସିଛି, ତାକୁ ଧରିବାପାଇଁ ସେମାନଙ୍କ ହାତ ଚଳିଲା ନାହିଁ । ସେମାନେ ନୀରବରେ ସେଠାରୁ ଚାଲିଗଲେ ।

ସନ୍‌ୟାତ୍‌ସେନ୍‌ଙ୍କ କୋଡ଼ିଏ ବର୍ଷର ଅଦମ୍ୟ ଚେଷ୍ଟାରେ ଚୀନ ଦେଶରେ ବିରାଟ ପରିବର୍ତ୍ତନ ଘଟିଲା । ୧୯୧୧ ମସିହା ଡିସେମ୍ବର

୨୯ ତାରିଖରେ ମାଞ୍ଚୁ ରାଜତ୍ୱର ଅବସାନ ଘଟିଲା । ଚୀନ ଗୋଟିଏ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଘୋଷିତ ହେଲା । ସନାଏତ୍‌ସେନ୍ ଏହି ସ୍ୱାଧୀନ ରାଷ୍ଟ୍ରର ପ୍ରଥମ ସଭାପତି ହେଲେ । ଏହି ଦିନଟି ଚୀନର ଇତିହାସରେ ଚିରସ୍ମରଣୀୟ ହୋଇ ରହିବ । ପୃଥିବୀର ପଞ୍ଚମାଂଶ କୋଟି ଅଧିବାସୀ ଏହି ଦିନ ସ୍ୱାଧୀନତା ଉତ୍ସବ ପାଳନ କରି ଜାତିର ଗୌରବ ବର୍ଦ୍ଧନ କରିଥିଲେ ।

ଯେଉଁ ଡାକ୍ତର କାଣ୍ଟଲି ସନାଏତ୍‌ଙ୍କୁ ଲଣ୍ଡନସ୍ଥିତ ଚୀନ ଦୂତାବାସର ବନ୍ଦଶାଳାରୁ ଉଦ୍ଧାର କରିଥିଲେ, ସେ କହିଛନ୍ତି, "ସନାଏତ୍ ଅର୍ଥରେ ବଶୀଭୂତ ହେବାର ଲୋକ ନୁହନ୍ତି । ସେ କେବେ ନିଜ ଲକ୍ଷ୍ୟରୁ ସ୍ଖଳିତ ହେବେ ନାହିଁ । ସେ ପ୍ରତିଷ୍ଠା ବା ସମ୍ମାନ ପାଇଁ ଲାଳାୟିତ ନୁହନ୍ତି । ଏତେ ଉଚ୍ଚ ପଦ ପାଇଥିଲେହେଁ ତାଙ୍କର ସେହି ବିନମ୍ର, ସରଳ ଓ ସ୍ନେହୀ ପ୍ରକୃତି ରହିଛି ।"

୧୯୨୫ ମସିହାର ମାର୍ଚ୍ଚ ମାସରେ ସନାଏତ୍‌ଙ୍କର ମୃତ୍ୟୁ ଘଟିଲା । ମୃତ୍ୟୁ ସମୟକୁ ତାଙ୍କର ବୟସ ମାତ୍ର ୫୭ ବର୍ଷ ହୋଇଥିଲା । ବୋଧହୁଏ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଦେଶପାଇଁ ସେ ଯେଉଁ ଦୁଃଖଯନ୍ତ୍ରଣା ଭୋଗିଥିଲେ ତାହାର ଫଳରେ ତାଙ୍କର ଏତେ ଅଳ୍ପ ବୟସରେ ମୃତ୍ୟୁ ଘଟିଥିଲା । କେବଳ ଚୀନର ଇତିହାସରେ ନୁହେଁ, ସମଗ୍ର ପୃଥିବୀର ସ୍ୱାଧୀନତା ଇତିହାସରେ ସନାଏତ୍‌ଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

— — —

# ବିଶ୍ୱକବି ରବୀନ୍ଦ୍ରନାଥ

ସମସ୍ତେ କହନ୍ତି ଯେ ଲକ୍ଷ୍ମୀ ଓ ସରସ୍ୱତୀ ପରସ୍ପରର ସପତ୍ନୀ ହେତୁ ଉଭୟେ କାହାରିକୁ ଏକାବେଳକେ ଦୟାପ୍ରଦର୍ଶନ କରନ୍ତି ନାହିଁ । କେହି ବିଦ୍ୟାର ଅଧିକାରୀ ହେଲେ, କେହି ଧନର ଅଧିକାରୀ ହୋଇଥାଏ । ଖୁବ୍ କ୍ୱଚିତ୍ ଲୋକ ଦେଖା ଯାଆନ୍ତି, ଯେଉଁମାନେକି ବିଦ୍ୟା ଓ ଐଶ୍ୱର୍ଯ୍ୟ ଉଭୟଦ୍ୱାରା ଭାଗ୍ୟବାନ୍ ହୋଇଅଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ଏହିଭଳି ଜଣେ ଭାଗ୍ୟଦେବୀଙ୍କର ବରପୁତ୍ର ଥିଲେ । ତାଙ୍କ ଜୀବନରେ ଲକ୍ଷ୍ମୀ ଏବଂ ସରସ୍ୱତୀ ନିଜ ନିଜର ସପତ୍ନୀ ବିବାଦ ଭୁଲି ଏକାଧାରରେ ଆଶିଷ ବର୍ଷଣ କରିଥିଲେ ।

ରବୀନ୍ଦ୍ରନାଥ ବଙ୍ଗଦେଶର ବିଖ୍ୟାତ ଠାକୁର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଏହି ଠାକୁର ପରିବାର ବଙ୍ଗଦେଶରେ ଉଚ୍ଚ ଜମିଦାର ବଂଶ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ସେମାନଙ୍କର ଧନ ସମ୍ପତ୍ତିର ଅଭାବ ନ ଥିଲା । କଲିକତା ନଗରୀରେ ଏକ ରାଜ-ପ୍ରାସାଦତୁଲ୍ୟ କୋଠାଘରେ ଠାକୁର ପରିବାର ଅବସ୍ଥାନ କରୁଥିଲେ ।



[ ରବୀନ୍ଦ୍ରନାଥ ]

ସେତେବେଳେ ଦେଶରେ ନାନା କୁସଂସ୍କାର ଏବଂ ଭିତ୍ତିହୀନ ଧାରଣା ପ୍ରଚଳିତ ଥିଲା । ଲୋକେ ଜାହାଜରେ ବସି ଦରିଆ ପାରି ହୋଇ ବିଦେଶ ଯିବାକୁ ସାହସ କରୁ ନ ଥିଲେ । କାରଣ ତାହା

ଫଳରେ ଜାତି ଓ ଧର୍ମ ହରାଇବାକୁ ପଡ଼ୁଥିଲା । ମାତ୍ର ରବୀନ୍ଦ୍ରନାଥଙ୍କ ଗୋସେଇଁ ବାପା ଦ୍ୱାରକାନାଥ ଠାକୁର ବଡ଼ ସଂସ୍କାରପ୍ରିୟ ଥିଲେ । ତାଙ୍କର ହୃଦୟ ବଡ଼ ଉଦାର ଥିଲା । ସେ ଇଂରେଜୀ ଭାଷାରେ ଅତ୍ୟନ୍ତ ଶିକ୍ଷିତ ଥିଲେ ଏବଂ ତତ୍କାଳୀନ ସମାଜର ବାଧାବନ୍ଧ ଅତିକ୍ରମ କରି ଇଉରୋପ ଭ୍ରମଣରେ ଯାଇଥିଲେ । ଇଉରୋପରେ ନାନା ଦେଶ ଭ୍ରମଣ କରି ତାଙ୍କର ଅପୂର୍ବ ଅଭିଜ୍ଞତା ଲାଭ ହୋଇଥିଲା । ସେହି ଦେଶମାନଙ୍କରେ ବହୁ ବଡ଼ ପଣ୍ଡିତ ଏବଂ ଗୁଣୀ ଲୋକଙ୍କ ସଂସ୍ପର୍ଶରେ ଆସି ସେ ନିଜକୁ ଧନ୍ୟ ମନେ କରିଥିଲେ ।

ଦ୍ୱାରକାନାଥ ଠାକୁର ଅତ୍ୟନ୍ତ ବିଳାସୀ ଥିଲେ । ତେଣୁ ମଉଜ୍‌ମଜଲିସ୍ କରି ସେ ପ୍ରଚୁର ଅର୍ଥ ବ୍ୟୟ କରୁଥିଲେ । ତେବେ ସେ କାଳର ସମାଜରେ ତାଙ୍କପରି ଦୟାଳୁ ଲୋକ ଅତ୍ୟନ୍ତ ବିରଳ ଥିଲେ କହିଲେ ଚଳେ । ସେ ଦୁଃଖୀ ଓ ଦରିଦ୍ରମାନଙ୍କର ଅଭାବ ମୋଚନ ପାଇଁ ମୁକ୍ତ ହସ୍ତରେ ଦାନ କରୁଥିଲେ । ଅର୍ଥବ୍ୟୟ କଲାବେଳେ ତାଙ୍କର ଭବିଷ୍ୟତ କଥା ମୋଟେ ଖିଆଲ ହେଉ ନ ଥିଲା । କେବଳ ପରପାଇଁ ଦାନ କରି ଏବଂ ନିଜର ବିଳାସବ୍ୟସନରେ ପ୍ରଚୁର ଖର୍ଚ୍ଚ କରି ଅନ୍ତିମ ଜୀବନରେ ସେ ଋଣଗ୍ରସ୍ତ ହୋଇ ପଡ଼ିଥିଲେ ।

ରବୀନ୍ଦ୍ରନାଥଙ୍କ ପିତା ଦେବେନ୍ଦ୍ର ନାଥ ଠାକୁର ଦ୍ୱାରକାନାଥଙ୍କର ପୁତ୍ର ଥିଲେ । ପିତାଙ୍କର ଋଣ ପରିଶୋଧ କରିବାପାଇଁ ସେ ଆଇନ ଅନୁସାରେ ଦାୟୀ ନ ଥିଲେହେଁ କର୍ତ୍ତବ୍ୟ ଓ ନୀତିଜ୍ଞାନର ଅନୁରୋଧରେ ପିତୃଋଣ ପରିଶୋଧ କରିଥିଲେ । ଏଥିପାଇଁ ସେ ଦାରିଦ୍ର୍ୟ ବରଣ କରିବାକୁ ମଧ୍ୟ କୁଣ୍ଠିତ ହୋଇ ନ ଥିଲେ । ତାଙ୍କର

ସାଧୁ ଓ ନିର୍ମଳ ସ୍ୱଭାବ ଯୋଗୁଁ ଜନସାଧାରଣଙ୍କ ମଧ୍ୟରେ ସେ ମହର୍ଷି ଦେବେନ୍ଦ୍ରନାଥ ନାମରେ ପରିଚିତ ଥିଲେ ।

ମହର୍ଷି ଦେବେନ୍ଦ୍ରନାଥଙ୍କର ପାଞ୍ଚପୁଅ । ସେମାନେ କେହି କାହାକୁ କମ ନ ଥିଲେ । ବିଭିନ୍ନ କ୍ଷେତ୍ରରେ ସେମାନେ ଖ୍ୟାତି ଅର୍ଜନ କରିଥିଲେ । ଏହି ପାଞ୍ଚ ପୁଅଙ୍କ ମଧ୍ୟରେ ସର୍ବକନିଷ୍ଠ ଥିଲେ ରବୀନ୍ଦ୍ର-ନାଥ । ସାନ ପୁଅ ହେଲେହେଁ ତାଙ୍କର ପ୍ରତିଭା ଆଜି ଜଗତବିଖ୍ୟାତ ହୋଇଅଛି । କେବଳ ଠାକୁର ପରିବାର ନୁହେଁ, ସମଗ୍ର ଭାରତ ବର୍ଷ ଆଜି ରବୀନ୍ଦ୍ରନାଥଙ୍କୁ ନେଇ ଗର୍ବ କରିବା ପାଇଁ ଯଥେଷ୍ଟ କାରଣ ଅଛି । ତାଙ୍କଭଳି ବିଖ୍ୟାତ କବି ଓ ଚିନ୍ତାଶୀଳ ଲୋକ ଜଗତରେ ଖୁବ୍ କ୍ୱଚିତ୍ ଜନ୍ମ ଗ୍ରହଣ କରିଥାଆନ୍ତି ।

୧୮୬୧ ଖ୍ରୀଷ୍ଟାବ୍ଦରେ ଏହି ମହାପୁରୁଷ କଲିକତା ନଗରୀରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ସେ କିଛିକାଳ ପାଇଁ ବିଦ୍ୟାଳୟକୁ ପ୍ରେରିତ ହୋଇଥିଲେ; ମାତ୍ର ବିଦ୍ୟାଳୟ ଗୃହ ମଧ୍ୟରେ ଆବଦ୍ଧ ହୋଇ ରହିବାକୁ ସେ ଆଦୌ ଇଚ୍ଛାକରୁ ନ ଥିଲେ । ଯେ ମୁକ୍ତ ଆକାଶର ବିହଙ୍ଗ ହୋଇ ବିଶ୍ୱର ମଧୁର ସଙ୍ଗୀତ ଗାନ କରିବାକୁ ଚାହେଁ, ତାକୁ ଅବା କିଏ ବିଦ୍ୟାଳୟର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରଖି ପାରିବ ? ରବୀନ୍ଦ୍ରନାଥ ବିଦ୍ୟାଳୟକୁ ନ ଯିବାପାଇଁ ନାନା ପ୍ରକାର ଛଳନା କରୁଥିଲେ । ବେଳେ ବେଳେ ସେ ପୀଡ଼ିତ ହେବାକୁ ଚେଷ୍ଟା କରୁଥିଲେ । ବର୍ଷାଋତୁରେ ଓଦା ଯୋତା ପିନ୍ଧିଲେ ଜ୍ୱର ହେବ ବୋଲି ସେ ଜାଣି ଜାଣି ଜୋତାକୁ ଓଦା କରୁଥିଲେ । ପିତା ଦେବେନ୍ଦ୍ରନାଥ ଦେଖିଲେ ଯେ ପୁତ୍ରର ବିଦ୍ୟାଳୟକୁ ଯିବାପାଇଁ ଘୋର ଅନିଚ୍ଛା ରହିଛି । ତେଣୁ ସେ ରବୀନ୍ଦ୍ରଙ୍କୁ ବିଦ୍ୟାଳୟକୁ ନ ପଠାଇ ତାଙ୍କର ଉପଯୁକ୍ତ ଶିକ୍ଷା ପାଇଁ ଗୃହଶିକ୍ଷକ ନିଯୁକ୍ତ କଲେ ।

କୌଣସି ସ୍କୁଲ କଲେଜରେ ନ ପଢ଼ି ମଧ୍ୟ ରବୀନ୍ଦ୍ରଙ୍କ ପରି ଏତେ ବଡ଼ ପଣ୍ଡିତ କ୍ୱଚିତ୍ ଦେଖାଯାନ୍ତି । ବିଶ୍ୱବିଦ୍ୟାଳୟର ଉପାଧି ନ ଥାଇ ମଧ୍ୟ ଲୋକ ନିଜର ସାଧନା ଓ ତପସ୍ୟା ବଳରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିପାରେ, ରବୀନ୍ଦ୍ରନାଥ ତାହାର ଏକ ଉଜ୍ଜ୍ୱଳ ଉଦାହରଣ । ତାଙ୍କର ଜ୍ୟେଷ୍ଠ ଭ୍ରାତା ସେତେବେଳେ ବିଲାତରେ ରହି ଅଧ୍ୟୟନ କରୁଥାଆନ୍ତି । ରବୀନ୍ଦ୍ର ମଧ୍ୟ ବିଲାତରେ କିଛିକାଳ ଅବସ୍ଥାନ କରି ଇଂରେଜୀ ଭାଷା ଓ ସାହିତ୍ୟ ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିଲେ ।

ତୁଳସୀ ଦୁଇପତ୍ରରୁ ବାସେ । ରବୀନ୍ଦ୍ରନାଥ ଯେ ଦିନେ ବଡ଼ କବି ହେବେ, ତାହାର ସୂଚନା ତାଙ୍କ ବାଲ୍ୟକାଳରୁ ମିଳିଥିଲା ।

ଦେବେନ୍ଦ୍ରନାଥ ଇଂରେଜୀ ଶିକ୍ଷିତ ଏବଂ ବ୍ରାହ୍ମ ଧର୍ମାବଲମ୍ବୀ ଥିଲେ । ତେଣୁ କଲିକତାର ବହୁ ଶିକ୍ଷିତ ବ୍ରାହ୍ମ ତାହାଙ୍କ ଗୃହରେ ଏକତ୍ର ହୋଇ ଧର୍ମ ଓ ଶିକ୍ଷା ବିଷୟରେ ଆଲୋଚନା କରୁଥିଲେ । ରବୀନ୍ଦ୍ରନାଥ ଏବଂ ତାଙ୍କର ଭାଇ ଭଉଣୀମାନେ ଏହି ସବୁ ଆଲୋଚନା ଶୁଣି ଏବଂ ବହୁ ଶିକ୍ଷିତ ଲୋକଙ୍କ ସଙ୍ଗରେ ମିଶି ଦିନକୁ ଦିନ ନୂଆ ନୂଆ କଥା ଶିଖୁଥିଲେ ।

ଠାକୁର ପରିବାରରେ ଲେଖାପଢ଼ା ପ୍ରତି ସମସ୍ତଙ୍କର ସମଧିକ ଆଗ୍ରହ ଥିଲା । ବିଶେଷତଃ ସାହିତ୍ୟ, ସଙ୍ଗୀତ ଓ ଚିତ୍ରକଳା ଚର୍ଚ୍ଚା କରିବା ପାଇଁ ସମସ୍ତେ ଉଦ୍ୟମ କରୁଥିଲେ । ଏହି କାରଣରୁ ରବୀନ୍ଦ୍ରନାଥ ଏବଂ ତାଙ୍କର ଭାଇ ଭଉଣୀ ମିଳି ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ । ରବୀନ୍ଦ୍ରନାଥଙ୍କର କଣ୍ଠର ସ୍ୱର ଅତ୍ୟନ୍ତ ମଧୁର ଥିଲା । ସେ କେବଳ ସୁନ୍ଦର ଗାଇ ପାରୁ ନ ଥିଲେ ; ଅତି

ମଧୁର ସଙ୍ଗୀତ ମଧ୍ୟ ରଚନା କରି ପାରୁଥିଲେ । କିଛିକାଳ ପରେ ବାପା ଦେବେନ୍ଦ୍ରନାଥ ଜାଣି ପାରିଲେ ଯେ ରବୀନ୍ଦ୍ରନାଥ ଗୀତ ରଚନା କରିପାରୁଛନ୍ତି ଏବଂ ମଧୁର କଣ୍ଠରେ ଅତ୍ୟନ୍ତ ମନୋରମ ଭାବରେ ଗାଇ ପାରୁଛନ୍ତି । ସେ ରବୀନ୍ଦ୍ରନାଥଙ୍କୁ ଡକାଇ ସଙ୍ଗୀତଟିଏ ବୋଲିବାକୁ କହିଲେ । ରବୀନ୍ଦ୍ରନାଥ ନିଜ ରଚିତ ସଙ୍ଗୀତ ଏତେ ସୁସ୍ୱରରେ ଗାନ କଲେ ଯେ ପିତା ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କୁ ପାଞ୍ଚଶହ ଟଙ୍କା ପୁରସ୍କାର ଦେଲେ ।

ପ୍ରଥମେ ପ୍ରଥମେ ରବୀନ୍ଦ୍ରନାଥ ଛଦ୍ମ ନାମରେ କବିତା ଲେଖୁଥିଲେ । ମାତ୍ର ଅଳ୍ପକାଳ ମଧ୍ୟରେ ବଙ୍ଗ ଦେଶରେ ସେ ଜଣେ ବଡ଼ କବି ବୋଲି ସମସ୍ତେ ସ୍ୱୀକାର କଲେ । ଅଠରବର୍ଷ ବେଳକୁ ଅନ୍ୟ କୌଣସି କବି ଏତେ ସୁନାମ ଅର୍ଜିଥିବାର ଜଣାଯାଏନାହିଁ ।

ରବୀନ୍ଦ୍ରନାଥ ଗଳ୍ପ, ନାଟକ, ଉପନ୍ୟାସ ଓ କବିତା ପ୍ରଭୃତି ସବୁ ପ୍ରକାର ସାହିତ୍ୟ ଲେଖିଅଛନ୍ତି । ସାହିତ୍ୟର ସବୁ ବିଭାଗରେ ତାଙ୍କର କୃତିତ୍ୱ ଦେଖିବାକୁ ମିଳେ । ସେ ଖାଲି ଲେଖି ନାହାନ୍ତି, ବହୁ ଚିତ୍ର ଅଙ୍କନ କରି ସୁନାମ ଅର୍ଜନ କରିଛନ୍ତି ।

ରବୀନ୍ଦ୍ରନାଥ ଗୀତାଞ୍ଜଳି ବୋଲି ଗୋଟିଏ କବିତା ବହି ରଚନା କରିଥିଲେ । ସେ ନିଜେ ଏହି ବହିଟିକୁ ଇଂରେଜରେ ଅନୁବାଦ କରିଥିଲେ । ଏହି ଇଂରେଜ ଗୀତାଞ୍ଜଳି ପଢ଼ି ବିଦେଶୀମାନେ ସୁଦ୍ଧା ତାଙ୍କୁ ପୃଥିବୀର ଜଣେ ଶ୍ରେଷ୍ଠ କବି ବୋଲି ସ୍ୱୀକାର କଲେ । ୧୯୧୩ ଖ୍ରୀଷ୍ଟାବ୍ଦରେ ସେ ସାହିତ୍ୟ ନିମନ୍ତେ ପୃଥିବୀର ଶ୍ରେଷ୍ଠ ପୁରସ୍କାର ନୋବେଲ ପ୍ରାଇଜ ପାଇଲେ ।

ନୋବେଲ ପୁରସ୍କାର ପାଇଲାପରେ ପୃଥିବୀର ନାନା ଦେଶରୁ ତାଙ୍କୁ ନିମନ୍ତ୍ରଣ ଆସିଲା । ସବୁ ଦେଶରେ ସେ ରାଷ୍ଟ୍ରର ଅତିଥି ଭାବରେ ସମ୍ମାନ ଲାଭ କରିଥିଲେ । ଇଉରୋପ, ରୁଷିଆ ପ୍ରଭୃତି ଦେଶ ବୁଲି ସେ ଭାରତର ସଭ୍ୟତା, ସାହିତ୍ୟ ଓ ସଂସ୍କୃତି ବିଷୟରେ ବକ୍ତୃତା ଦେଲେ ।

ତତ୍କାଳୀନ ଭାରତର ଇଂରେଜ ସରକାର ତାଙ୍କୁ ସାର୍ ଉପାଧି ଦେଇଥିଲେ । ସେତେବେଳେ ଏପରି ଉପାଧି ଲାଭ ଭାରତୀୟମାନଙ୍କ ପକ୍ଷରେ ସବୁଠାରୁ ବଡ଼ ଗୌରବର ବିଷୟ ଥିଲା । ସେତେବେଳେ ଇଂରେଜ ସରକାର ଅଧୀନରୁ ଭାରତକୁ ମୁକ୍ତ କରିବାପାଇଁ ଦେଶରେ ଆନ୍ଦୋଳନ ଚାଲିଲା । ଲୋକେ ଇଂରେଜମାନଙ୍କ ସହିତ ଅସହଯୋଗ କରିବାକୁ ସ୍ଥିରକଲେ । ସେତେବେଳେ ଦେଶପ୍ରେମୀ ରବୀନ୍ଦ୍ରନାଥ ନିଜର ଉପାଧି ଫେରେଇ ଦେଇଥିଲେ । ସେ ମାତୃଭୂମିକୁ କେତେ ଭଲ ପାଉଥିଲେ, ଏହା ତାହାର ପ୍ରମାଣ । ଆଜି ସ୍ୱାଧୀନ ଭାରତର ଯେଉଁ ଗୀତ ଜାତୀୟ ସଙ୍ଗୀତ ରୂପେ ବୋଲାଯାଏ, ସେହି "ଜନଗଣ ମନ ଅଧିନାୟକ" ଗୀତଟି ରବୀନ୍ଦ୍ରନାଥ ରଚନା କରିଥିଲେ ।

ଆଗରୁ କୁହାଯାଇଛି ଯେ ରବୀନ୍ଦ୍ରନାଥ କୌଣସି ସ୍କୁଲ କଲେଜରେ ପାଠ ପଢ଼ି ନ ଥିଲେ । ଇଂରେଜ ଧରଣରେ ଚଳୁଥିବା ସ୍କୁଲ କଲେଜ ଆମ ଦେଶର ଉପଯୋଗୀ ନୁହେଁ ବୋଲି ତାଙ୍କର ଧାରଣା ଥିଲା । ତେଣୁ ସେ ବୋଲପୁରଠାରେ 'ଶାନ୍ତିନିକେତନ' ବୋଲି ଗୋଟିଏ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏଠାରେ ନୂଆ ଧରଣର ଶିକ୍ଷା ଦିଆଯାଉଥିଲା । ଏବେ ଏହା 'ବିଶ୍ୱଭାରତୀ' ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଅଛି । ରବୀନ୍ଦ୍ରନାଥ ଆଜି ଆଉ

ନାହାନ୍ତି । ତାଙ୍କର ମାଟିର ଦେହ କେଉଁକାଳୁ ମାଟିରେ ମିଶିଗଲଣି । କିନ୍ତୁ ତାଙ୍କର ଅମର ଲେଖାବଳୀ ଆଜଯାଏଁ ବଞ୍ଚିଅଛି । କାଳିଦାସ, ସେକ୍‌ସପିଅରଙ୍କ ପରି ରବୀନ୍ଦ୍ରନାଥ ମୃତ୍ୟୁର ଶହ ଶହ ବର୍ଷ ପରେ ସୁଦ୍ଧା ବଞ୍ଚି ରହିବେ ଓ ସମଗ୍ର ପୃଥିବୀ ତାଙ୍କର ଯଶୋଗାନ କରୁଥିବ ।

ଏବେ ସମଗ୍ର ପୃଥିବୀ ତାଙ୍କ ଜନ୍ମର ଶତବାର୍ଷିକ ଉତ୍ସବ ପାଳନ କରି ତାଙ୍କୁ ଭକ୍ତିର ଅର୍ଘ୍ୟ ଦେଉଅଛି ।



# ଅନ୍ଧାରରେ ଆଲୁଅ ଲିଭିଂଷ୍ଟୋନ

ପୃଥିବୀର ମହାଦେଶମାନଙ୍କ ମଧ୍ୟରେ ଆଫ୍ରିକା ଅନ୍ୟତମ । ଏହାକୁ ଲୋକେ 'ତମସାଚ୍ଛନ୍ନ ମହାଦେଶ' ବୋଲି ଆଖ୍ୟାତ କରୁଥିଲେ । କାରଣ ବହୁକାଳ ପର୍ଯ୍ୟନ୍ତ ଏହି ମହାଦେଶର ଅଭ୍ୟନ୍ତର ପ୍ରଦେଶ ଅନାବିଷ୍କୃତ ଅବସ୍ଥାରେ ରହିଥିଲା । ଏହି ମହାଦେଶର ଉତ୍ତରାଞ୍ଚଳରେ ବିଶାଳ ସାହାରା ମରୁଭୂମି ଏବଂ ଦକ୍ଷିଣାଞ୍ଚଳରେ ନିବିଡ଼ ଅରଣ୍ୟ ପ୍ରଦେଶ ବିଦ୍ୟମାନ ।



[ଲିଭିଂଷ୍ଟୋନ୍]

ସେହି ଦୁର୍ଗମ ଦେଶକୁ ଆବିଷ୍କାର କରିବା ପାଇଁ ବହୁ ସାହସୀ ବୀର ପ୍ରାଣଦାନ କରିଅଛନ୍ତି ; କିନ୍ତୁ ସେହି ଅମର ସନ୍ତାନମାନଙ୍କ ମଧ୍ୟରେ ଡେଭିଡ଼ ଲିଭିଂଷ୍ଟୋନ୍ ଅଗ୍ରଗଣ୍ୟ ।

୧୮୧୩ ଖ୍ରୀଷ୍ଟାବ୍ଦରେ ସ୍କଟ୍‌ଲଣ୍ଡର ବ୍ଲାଣ୍ଟାଇର୍ ନାମକ ସ୍ଥାନରେ ଡେଭିଡ୍ ଲିଭିଂଷ୍ଟୋନ୍ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଅତ୍ୟନ୍ତ ଦରିଦ୍ର ଥିଲେ । ଡେଭିଡ୍‌ଙ୍କ ପିତା ଗୋଟିଏ ଦରଜୀ ଦୋକାନରେ ରହି କାର୍ଯ୍ୟ ଶିକ୍ଷା କରୁଥିଲେ । ତାଙ୍କ କର୍ମକୁଶଳତା ସ୍ୱଭାବ ଓ ଚରିତ୍ରରେ ମୁଗ୍ଧ ହୋଇ ଦରଜୀ ତାଙ୍କୁ ନିଜର ଜାମାତା ପଦରେ ବରଣ କଲେ । ଡେଭିଡ୍‌ଙ୍କ ମାତା ଅତ୍ୟନ୍ତ ସାଧୁଚରିତା ଏବଂ କର୍ମକୁଶଳା ଥିଲେ । ଫଳରେ ଡେଭିଡ୍‌ଙ୍କ ପିତା ମାତା ତାଙ୍କ ଅଞ୍ଚଳରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ ।

ଲିଭିଂଷ୍ଟୋନ ପିତାମାତାଙ୍କର ଉପଯୁକ୍ତ ସନ୍ତାନ ଥିଲେ । ସେ ଦରିଦ୍ର ଥିଲେହେଁ ତାଙ୍କର ହୃଦୟ ସଙ୍କୀର୍ଣ୍ଣ ନ ଥିଲା । ସେ ଥିଲେ ଅତ୍ୟନ୍ତ ଉଚ୍ଚାଭିଳାଷୀ । ଦୁଃସାହସିକ କାର୍ଯ୍ୟ କରିବାକୁ ସେ କେବେ ହେଲେ ପଶ୍ଚାତ୍‌ପଦ ହେଉ ନ ଥିଲେ । ଦରିଦ୍ର ପିତା ତାହାଙ୍କୁ ପାଠ ପଢ଼ାଇବାକୁ କ୍ଷମ ନ ହେବାରୁ ସେ ଗୋଟିଏ ତୁଳା କଳରେ ଶ୍ରମିକର କଲେ । ମାତ୍ର ତାଙ୍କର ପଢ଼ିବାର ବଳବତୀ ଇଚ୍ଛା ଏହାଦ୍ୱାରା ଲୋପ ହେଲା ନାହିଁ । ସେ ନୈଶବିଦ୍ୟାଳୟରେ ନାମ ଲେଖାଇ ବିଦ୍ୟାଧ୍ୟୟନ ଆରମ୍ଭ କଲେ । ତାଙ୍କୁ ସାରା ଦିନସାରା କଠୋର ପରିଶ୍ରମ କରିବାକୁ ପଡୁଥିଲେହେଁ ସେ ସେଥିପାଇଁ ଆଦୌ ହତୋତ୍ସାହ ହୋଇ ନ ଥିଲେ । କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ସେ ରୋଜଗାର କରି ପିତାଙ୍କୁ ଗୃହ ପରିଚାଳନାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଅବସର ସମୟରେ ଅଧ୍ୟୟନ କରିବାକୁ ଲାଗିଲେ ।

ସେତେବେଳେ ଗ୍ଲାସଗୋ ସହରରେ ଡାକ୍ତରୀ ଶିକ୍ଷା ପାଇଁ ଏକ ଛଅମାସିଆ ଟ୍ରେନିଂ ବ୍ୟବସ୍ଥା ଥିଲା । ଲିଭିଂଷ୍ଟୋନ ବଡ଼ ପରୋପକାରୀ ଥିଲେ । ସେ ମନେକଲେ, ଯଦି କୌଣସିମତେ ଡାକ୍ତରୀ ଶିକ୍ଷା କରିପାରିବେ ତେବେ ଅକ୍ଲେଶରେ ତାଙ୍କର ଉଦ୍ଦେଶ୍ୟ ସିଦ୍ଧ ହେବ । ତେଣୁ କଠୋର ପରିଶ୍ରମ କରି କିଛି ଅର୍ଥ ସଞ୍ଚୟ କଲେ ଏବଂ ସେହି ଅର୍ଥରେ ଗ୍ଲାସଗୋ ଯାଇ ଡାକ୍ତରୀ ଶିକ୍ଷା ଲାଭ କଲେ । ଏହାପରେ 'ଲଣ୍ଡନ ମିଶନ ସଙ୍ଘ' ସାହାଯ୍ୟରେ ବିଦେଶକୁ ଯାଇଁ ସେବାକାର୍ଯ୍ୟ କରିବାକୁ ସେ ପ୍ରାର୍ଥୀ ହେବାରୁ ସେହି ଅନୁଷ୍ଠାନ ଅତ୍ୟନ୍ତ ଆଗ୍ରହର ସହିତ ତାହାଙ୍କୁ ଆହୁରି ଦୁଇବର୍ଷ ଡାକ୍ତରୀ ପଢ଼ିବାପାଇଁ ସାହାଯ୍ୟ କଲେ । ଛାତ୍ରାବସ୍ଥାରେ ସେ ରନ୍ଧନ କାର୍ଯ୍ୟଠାରୁ

ଆରମ୍ଭ କରି ଜଙ୍ଗଲରେ କାଠ ହାଣିବା ପର୍ଯ୍ୟନ୍ତ ଯାବତୀୟ କାର୍ଯ୍ୟ କରୁଥିଲେ ।

ଏହି ସମୟରେ ଆଫ୍ରିକାରେ ମିଶନ କାର୍ଯ୍ୟକରି ଫେରିଥିବା ଡାକ୍ତର ମାଫାଟ୍ ଲଣ୍ଡନରେ ବାସ କରୁଥାଆନ୍ତି । ଆଫ୍ରିକାରେ ମିଶନର ପ୍ରଚାର କାର୍ଯ୍ୟ ପାଇଁ ସେ ଲିଭିଂଷ୍ଟୋନଙ୍କୁ ପ୍ରବର୍ତ୍ତାଇଲେ । ଫଳରେ ଡେଭିଡ୍ ଲିଭିଂଷ୍ଟୋନ୍ ୧୮୪୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ଆଠ ତାରିଖରେ ଆଫ୍ରିକାର ଉତ୍ତମାଶା ଅନ୍ତରୀପ ଅଭିମୁଖେ ଯାତ୍ରା କରି ତିନିମାସ ପରେ ସେଠାରେ ପହଞ୍ଚିଥିଲେ । ଏହି ଅନ୍ତରୀପରେ ପ୍ରବେଶ କରି କେତେକ ଦିନ ପରେ ଲିଭିଂଷ୍ଟୋନ ପୂର୍ବମୁଖ ହୋଇ 'ଆଲ୍‌ଗୋଆ' ଉପସାଗର ଅଭିମୁଖେ ଯାତ୍ରା କଲେ । ସେଠାରୁ ବଳଦ ଗାଡ଼ିରେ କୁରୁମାନ୍ ନାମକ ସ୍ଥାନକୁ ଗମନ କଲେ । ଏହି ଗ୍ରାମରେ କେତେ ବର୍ଷ ପୂର୍ବେ ଡାକ୍ତର ମାଫାଟ୍ ଓ ହାମିଲ୍‌ଟନ୍ ଗୋଟିଏ ଇଂରେଜ ବସତି ସ୍ଥାପନ କରିଥିଲେ । ଲିଭିଂଷ୍ଟୋନ୍ ସେଠାରେ କିଛିକାଳ ଯାପନ କରି ବେଚୁଆନା ଜାତିମାନଙ୍କ ମଧ୍ୟରେ ଧର୍ମ ପ୍ରଚାର କରିବା ଉଦ୍ଦେଶ୍ୟରେ ବାହାରିଲେ । ଏମାନେ ଥିଲେ ଏକ ବଣୁଆ ଜାତି । ସେମାନେ ଆନନ୍ଦରେ ଲିଭିଂଷ୍ଟୋନଙ୍କୁ ଗ୍ରହଣ କରିଥିଲେ । ତତ୍ପରେ ସେ ସେହି ସ୍ଥାନ ପରିତ୍ୟାଗ କରି ମେବୋଟ୍‌ସା ଉପତ୍ୟକାରେ ନିଜର ସଂଗଠନ କାର୍ଯ୍ୟ ଆରମ୍ଭ କଲେ । ବହୁ ପରିଶ୍ରମ କରି ସ୍ଥାନୀୟ ଜାତିମାନଙ୍କର ଭାଷା ମଧ୍ୟ ତାଙ୍କୁ ଆୟତ୍ତ କରିବାକୁ ପଡ଼ିଥିଲା । ଏହି ଉପତ୍ୟକାରେ ବହୁତ ସିଂହ ବାସ କରନ୍ତି । ସେମାନଙ୍କ ଯୋଗୁଁ ସେଠାରେ ଜୀବନ ସର୍ବଦା ବିପଦସଂକୁଳ ଥିଲା । ଦିନେ ସ୍ଥାନୀୟ ଅଧିବାସୀଙ୍କ ସହିତ ସେ ସିଂହ ଦଳକୁ ଆକ୍ରମଣ କଲାବେଳେ ମୃତ୍ୟୁମୁଖରୁ ଅଳ୍ପକେ

ରକ୍ଷା ପାଇଥିଲେ । ତେବେ ସିଂହର ଆକ୍ରମଣରେ ଚିରଦିନ ପାଇଁ ତାଙ୍କ ହାତର ଗୋଟିଏ ଅଂଶ ହରାଇବାକୁ ପଡ଼ିଥିଲା ଏବଂ ସେ ବିକଳାଙ୍ଗ ହୋଇଥିଲେ ।




୧୮୪୪ ଖ୍ରୀଷ୍ଟାବ୍ଦରେ ଲିଭିଂଷ୍ଟୋନ୍ ଡାକ୍ତର ମାଫାଟ୍‌ଙ୍କ କନ୍ୟା ମେରୀଙ୍କୁ ବିବାହ କରିଥିଲେ । ମେରୀ ଆଫ୍ରିକାରେ ଜନ୍ମଗ୍ରହଣ କରିଥିଲେ ଏବଂ ସେଠାର ଭାଷା ମଧ୍ୟ ଆୟତ୍ତ କରିଥିଲେ । ତେଣୁ ସେ ଲିଭିଂଷ୍ଟୋନ୍‌ଙ୍କ ଆଫ୍ରିକା ଯାତ୍ରା କାଳରେ ଉପଯୁକ୍ତ ସହକର୍ମିଣୀ ହୋଇପାରିଥିଲେ ।

ନୂତନ ଦେଶର ଆବିଷ୍କାରରେ ବହୁବର୍ଗତ ହୋଇ ତାଙ୍କୁ ନାନା ଦୁଃଖ କଷ୍ଟ ବରଣ କରିବାକୁ ପଡ଼ୁଥିଲା ; ପଥ ଘାଟ ଅତ୍ୟନ୍ତ ଦୁର୍ଗମ ଥିଲା । ହିଂସ୍ର ଜନ୍ତୁମାନଙ୍କ ପ୍ରାଦୁର୍ଭାବରେ ଜଳପଥ ଓ ସ୍ଥଳପଥ ଉଭୟ ବିପଦପୂର୍ଣ୍ଣ ଥିଲା । ଅନେକ ସମୟରେ ଉପଯୁକ୍ତ ଖାଦ୍ୟ ସଂଗ୍ରହ କରିବା ସମ୍ଭବ ହେଉ ନ ଥିଲା ଏବଂ ଔଷଧ ଅଭାବରେ ଜ୍ୱରବେଗର ଆକ୍ରମଣରୁ ସହଜରେ ମୁକ୍ତିଲାଭ କରିବା ସମ୍ଭବ ନ ଥିଲା । ଦସ୍ୟୁ ତସ୍କରମାନେ ବେଳେବେଳେ ଆକ୍ରମଣ କରି ସର୍ବସ୍ୱ ଅପହରଣ କରି ନେଉଥିଲେ । ତଥାପି ଲିଭିଂଷ୍ଟୋନ ଉତ୍ସାହ ହରାଇ ନ ଥିଲେ । ସେ ସେହି ଅଞ୍ଚଳ ମୂଳକରେ ଧର୍ମ ପ୍ରଚାର କରିବା ସଙ୍ଗେ ସଙ୍ଗେ ସଭ୍ୟତାର ବିସ୍ତାର ପାଇଁ ଉଦ୍ୟମ କରୁଥିଲେ । ତାଙ୍କ ପ୍ରଚେଷ୍ଟାରେ ବହୁ ସ୍ଥାନରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇ ଥିଲା । ବହୁ ଅସଭ୍ୟ ବଣୁଆ ଜାତିଙ୍କୁ ସେ ମୈତ୍ରୀ ପାଶରେ ଆବଦ୍ଧ ରଖି ସଭ୍ୟତାର ମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ସେ ଯେଉଁ ଗ୍ରାମରେ ଅବସ୍ଥାନ କରୁଥିଲେ ସେଠାରେ ରୋଗାକ୍ରାନ୍ତ ବ୍ୟକ୍ତିଙ୍କୁ ଔଷଧ ଓ ପଥ୍ୟ ଦେଇ ସେମାନଙ୍କର ସେବା କରୁଥିଲେ ।

ଲୋକସେବା ଏବଂ ଧର୍ମପ୍ରଚାର ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ଉଷ୍ଣପ୍ରଧାନ ଆଫ୍ରିକା ମହାଦେଶର କୃଷ୍ଣକାୟ ଲୋକମାନଙ୍କୁ ଇଉରୋପୀୟ ଲୋକେ ଘୃଣା କରୁଥିଲେ । ସେମାନଙ୍କର ଆଚାର ବ୍ୟବହାର ପ୍ରତି ଇଉରୋପୀୟମାନଙ୍କର କୌଣସି ସହାନୁଭୂତି ନ ଥିଲା, ବରଂ ଗୋରା ଦାସବ୍ୟବସାୟୀମାନେ ଏହି କୃଷ୍ଣକାୟ ଲୋକମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରୁଥିଲେ । ଲିଭିଂଷ୍ଟୋନ ଥିଲେ ଦୟାର ପ୍ରତିମୂର୍ତ୍ତି । ଆଫ୍ରିକା ଅଧିବାସୀଙ୍କର ଦୁଃଖରେ ତାଙ୍କର ହୃଦୟ ବିଗଳିତ ହେଉଥିଲା । ତେଣୁ ସେ

ଆମଋଣ ସେହି ଦେଶର ସେବାରେ ନିଜକୁ ଉତ୍ସର୍ଗ କରି ଦେଇ-ଥିଲେ । ସେ ହସି ହସି ରୋଗ, କ୍ଷୁଧା ଏବଂ ମୃତ୍ୟୁ ସଙ୍ଗେ ଲଢ଼େଇ କରିଥିଲେ—କେବଳ ସେହି ଅନାବିଷ୍କୃତ ଦେଶର ରହସ୍ୟ ସଭ୍ୟ ଜଗତରେ ପ୍ରକାଶ କରିବାପାଇଁ ।

ସେ ଦେଶର ଅଶିକ୍ଷିତ ଅନାର୍ଯ୍ୟ ଲୋକଙ୍କୁ ଶିକ୍ଷିତ କରାଇବା ଏବଂ ଖ୍ରୀଷ୍ଟଧର୍ମରେ ଅନୁପ୍ରାଣିତ କରାଇବା ଲିଭିଂଷ୍ଟୋନ୍‌ଙ୍କର ଉଦ୍ଦେଶ୍ୟ ଥିଲା । ସେ ସେହି ଉଦ୍ଦେଶ୍ୟରେ ବହୁ ବଣୁଆ ଜାତି ଲୋକଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇ ପାରିଥିଲେ ଏବଂ ସେମାନଙ୍କ ମଧ୍ୟରେ ସଭ୍ୟତା ପ୍ରଚାର କରିଥିଲେ ।

କୋଲବେଙ୍ଗ ଗ୍ରାମରେ କେତେକାଳ ବସବାସ କଲାପରେ ସେ ଶୁଣିବାକୁ ପାଇଲେ ଯେ ଅନେକ ଦୂରରେ ଗାମି ନାମକ ଗୋଟିଏ ହ୍ରଦ ଅଛି । ସେଠାକୁ ଯିବାକୁ ହେଲେ ଏକ ବିସ୍ତୃତ ମରୁଭୂମି ପଡ଼େ । ସେହି ମରୁଭୂମିରେ ଜୀବନଧାରଣ ଅତ୍ୟନ୍ତ ବିପଦପୂର୍ଣ୍ଣ ଥିଲା । ତଥାପି ସେ କୌଣସି ବିପଦକୁ ଭ୍ରୂକ୍ଷେପ ନ କରି ଅଗ୍ରସର ହେଲେ । ବାଟରେ ନିଜର ଜୀବନ ରକ୍ଷା କରିବାପାଇଁ ସେ ବହୁ ନୃଶଂସ ଜାତିର ଲୋକଙ୍କୁ ଖାଦ୍ୟ ଓ ଟଙ୍କା ପଇସା ମଧ୍ୟ ଲାଞ୍ଚ ଦେବାକୁ ବାଧ୍ୟ ହେଉଥିଲେ । ଅନେକ କଷ୍ଟ ସହି ବହୁ ଶତ ମାଇଲ ଦୁର୍ଗମ ପଥ ପଦବ୍ରଜରେ ଅତିକ୍ରମ କରି ଶେଷରେ ସେ ଗାମି ହ୍ରଦ ଆବିଷ୍କାର କରିଥିଲେ ।

ଏକଦା ଲୋଏଣ୍ଡା ନାମକ ସ୍ଥାନକୁ ଯିବା ଉଦ୍ଦେଶ୍ୟରେ ସେ ଗୋଟିଏ ନଦୀରେ ଷ୍ଟିମ୍‌ର ଡଙ୍ଗା ଚଢ଼ି ବାହାରି ପଡ଼ିଲେ । ମାତ୍ର ବାଟରେ ତାଙ୍କୁ ଗୋଟିଏ ଗଣ୍ଡା ଆକ୍ରମଣ କରିବାରୁ ସେ ଜଳରେ

ବୁଦ୍ଧ ରକ୍ଷ ଜୀବନ ବଞ୍ଚାଇଥିଲେ । ଲୋଏଣ୍ଡା ଯିବାକୁ ତାଙ୍କୁ ପ୍ରାୟ ୮୦୦ ମାଇଲ ପଥ ଅତିକ୍ରମ କରିବାକୁ ପଡ଼ିଥିଲା । ପୂର୍ବ ଦିଗରେ ଭ୍ରମଣ କଲାବେଳେ ଲିଭିଂଷ୍ଟୋନ୍ ଜାମ୍ବେଜୀ ନଦୀର ଏକ ଭୀଷଣ ଜଳପ୍ରପାତ ଦର୍ଶନ କରି ତାହାକୁ ଇଂଲଣ୍ଡର ଅଧୀଶ୍ୱରୀଙ୍କ ନାମାନୁସାରେ ଭିକ୍ଟୋରିଆ ଜଳପ୍ରପାତ ବୋଲି ନାମିତ କରିଥିଲେ ।

ଦୀର୍ଘକାଳ ପର୍ଯ୍ୟନ୍ତ ଦୁର୍ଗମ ପ୍ରଦେଶରେ ଭ୍ରମଣ କରୁଥିବାରୁ ତାଙ୍କ ନିକଟରେ ସ୍ୱଦେଶର କୌଣସି ସଂବାଦ ପହଞ୍ଚି ପାରୁ ନ ଥିଲା । ତେଣୁ ସେ ନିଜର ପରିବାରର ସଂବାଦ ପାଇବା ପାଇଁ ବଡ଼ ବ୍ୟାକୁଳ ହୋଇପଡ଼ିଲେ ଓ ୧୮୫୬ରେ ଇଂଲଣ୍ଡ ଯାତ୍ରାକଲେ । ସେଠାରେ ଇଂଲଣ୍ଡର ସରକାର ଓ ଜନସାଧାରଣ ତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କଲେ । ନାନା ଶିକ୍ଷାନୁଷ୍ଠାନ ତରଫରୁ ତାଙ୍କର ଗୁଣ କୀର୍ତ୍ତନ କରି ଉପାଧିମାନ ଅର୍ପଣ କରାଗଲା । ପରିଶେଷରେ ଲିଭିଂଷ୍ଟୋନ୍ ଆଫ୍ରିକା ଭ୍ରମଣର ଏକ ବୃତ୍ତାନ୍ତ ରଚନା କରି ଦେଶବାସୀଙ୍କୁ ଉପହାର ଦେଇଥିଲେ । ତାଙ୍କର ଆଫ୍ରିକା ଆବିଷ୍କାରରେ ମୁଗ୍ଧ ହୋଇ ବ୍ରିଟିଶ ସରକାର କନଡେନ ପ୍ରଦେଶର ରାଜଦୂତରୂପେ ଲିଭିଂଷ୍ଟୋନ୍‌ଙ୍କୁ ନିଯୁକ୍ତ କଲେ । ତେଣୁ ତାଙ୍କ ଭାଗ୍ୟରେ ଦ୍ୱିତୀୟବାର ଆଫ୍ରିକା ପରିଦର୍ଶନର ସୁଯୋଗ ମିଳିଲା । ଏହି ଥର ତାଙ୍କର ଅନୁସନ୍ଧାନର ସୀମା ନ ଥିଲା । ବହୁ ଆୟାସ ସହକାରେ ସେ ନ୍ୟାସା ନାମକ ବୃହତ୍ ହ୍ରଦ ଆବିଷ୍କାର କଲେ । ପ୍ରଥମ ଥର ଆଫ୍ରିକା ଯାତ୍ରାକାଳରେ ସେ ପିତାଙ୍କୁ ହରାଇଥିଲେ ଏବଂ ଦ୍ୱିତୀୟ ଅଭିଯାନ କାଳରେ ତାଙ୍କର ପ୍ରାଣସମା ପତ୍ନୀଙ୍କୁ ମଧ୍ୟ ହରାଇବାକୁ ପଡ଼ିଲା । ତେଣୁ ସେ ଭାଙ୍ଗି ପଡ଼ିଲେ ଏବଂ ଦେଶକୁ ଫେରି ଆସିଲେ । ତଥାପି ତାଙ୍କର ଧୈର୍ଯ୍ୟ ଅପୂର୍ବ ଥିଲା । ସେ ପୁନର୍ବାର ୧୮୬୫ ଖ୍ରୀଷ୍ଟାବ୍ଦରେ

ତୃତୀୟଥର ଆଫ୍ରିକା ଯାତ୍ରା କରି କେତେକ ନୂତନ ରହସ୍ୟର ଉଦ୍‌ଘାଟନ ପାଇଁ ପଦବ୍ରଜରେ ଭ୍ରମଣ କରିବାକୁ ଲାଗିଲେ । କିନ୍ତୁ ଏଥର ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ସେ ବାରମ୍ବାର ଜ୍ୱରବେଗରେ ପୀଡ଼ିତ ହେଲେ । ତଥାପି ତାଙ୍କୁ ଏହି ଅଭିଯାନରୁ କେହି ବିରତ କରାଇ ପାରି ନ ଥିଲେ ।

୧୮୭୩ ଖ୍ରୀଷ୍ଟାବ୍ଦରେ ସେହି ଆଫ୍ରିକା ମହାଦେଶରେ ଏହି କର୍ମବୀରଙ୍କର ଜୀବନଦୀପ ଲିଭିଗଲା ; କିନ୍ତୁ ତମସାଚ୍ଛନ୍ନ ଆଫ୍ରିକା ମହାଦେଶର ଅଶିକ୍ଷିତ, ବନ୍ୟ ଜାତିମାନଙ୍କ ମଧ୍ୟରେ ସଭ୍ୟତାର ଆଲୁଅ ଜାଳି ସେ ଗୋଟିଏ ଆଦର୍ଶ ଦେଖାଇ ଯାଇଅଛନ୍ତି ।

— — —

ମୁଦ୍ରାକର—ଶ୍ରୀ ଚନ୍ଦ୍ରମଣି ମିଶ୍ର, ନବଜୀବନ ପ୍ରେସ, କଟକ—୨